# ଆଧ୍ୟାତ୍ମିକତା ଓ ସମାଜବାଦ

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ
ପୂର୍ଣ୍ଣାତ୍ ପୂର୍ଣ୍ଣ ମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ
ପୂର୍ଣ୍ଣ ମେବା ବଶିଷ୍ୟତେ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

ପଞ୍ଚସ୍ତରୀ ପଇସା

# ଆଧ୍ୟାତ୍ମିକତା
# ଓ
# ସମାଜବାଦ

ଲେଖକ :
ଶ୍ରୀ କୁଳମଣି ଦାଶ
ଭୁବନେଶ୍ୱର-୨

ପ୍ରଥମ ମୁଦ୍ରଣ ୨୦୦୦
ଜୁଲାଇ; ୧୯୭୬

ମୂଲ୍ୟ : ୭୫ ପଇସା

ପ୍ରକାଶକ :

ଶ୍ରୀ ବ୍ରହ୍ମାନନ୍ଦ ଧର୍ମୋତଥ୍ୟ

ଅଧ୍ୟକ୍ଷ,

ହରିହର ସତ୍‌ସଙ୍ଗ ସେବାଶ୍ରମ

ଭୁବନେଶ୍ୱର-୨

ଶ୍ରୀ ଶାରଦା ପ୍ରେସ, ଭୁବନେଶ୍ୱର-୨ରେ
ଶ୍ରୀ ପ୍ରସନ୍ନ କୁମାର ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ।

# ସୂଚନା

ଶୃଣ୍ବନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ

ହେ ଅମୃତ ସନ୍ତାନଗଣ ଶୁଣ । ଏହା ଈଶ୍ବରଙ୍କର ଆହ୍ୱାନ । ଈଶ୍ବର ବା ଆତ୍ମାର ଅନୁସନ୍ଧାନ ରୂପ ଆଧ୍ୟାତ୍ମିକତା ମାନବର ଚରମ ଲକ୍ଷ୍ୟ ଏବଂ ମୁଖ୍ୟ ଉଦ୍ଦେଶ୍ୟ । ଜ୍ଞାତରେ, ଅଜ୍ଞାତରେ ବ୍ୟବହାରିକ ବୈଷୟିକ ଏବଂ ଆଧ୍ୟାତ୍ମିକ ଜୀବନରେ ମାନବ ଏହାଙ୍କର ଅନୁସନ୍ଧାନ କରୁଅଛି । କାରଣ ସତ୍ୟ, ଶିବ, ସୁନ୍ଦର ଜ୍ଞାନ ଓ ଆନନ୍ଦ ଜୀବର ସ୍ୱରୂପ । ତେଣୁ ଏହାଙ୍କର ଅନୁସନ୍ଧାନ ନ କରି ମନୁଷ୍ୟ ରହି ପାରେ ନାହିଁ । କାରଣ ଏହା ଜୀବର ଧର୍ମ ବା ସ୍ୱଭାବ । ଏହାଙ୍କର ଅନୁସନ୍ଧାନରେ ମୃତ୍ୟୁ ଭୟ ଦୂରୀଭୂତ ହୋଇପାଏ ଏବଂ ସତ୍ୟ, ଜ୍ଞାନ ଓ ଆନନ୍ଦର ଉପଲବ୍ଧି ହୁଏ ।

ମାତ୍ର ଆମ୍ଭେମାନେ ସମାଜରେ ବାସ କରୁ । ତେଣୁ ସମାଜବାଦୀ ଭାବରେ ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି, ପରିବାରନୀତି ଭିତରେ ଆମ୍ଭମାନଙ୍କୁ ଗତି କରିବାକୁ ହେବ । ଆଧ୍ୟାତ୍ମିକତା ଭାରତୀୟ ସମାଜବାଦର ମୂଳଭିତ୍ତି । ଆଧ୍ୟାତ୍ମିକତାର ସାଧନ, ଦର୍ଶନ ଜନିତ ଆଦର୍ଶରେ ସମାଜରେ ସାମ୍ୟ, ମୈତ୍ରୀ ରୂପ ସାମାଜିକ ନ୍ୟାୟ ପ୍ରତିଷ୍ଠା ଲାଭ କରିବ । ଉକ୍ତ ବିଷୟବସ୍ତୁ ଏହି କ୍ଷୁଦ୍ର ପୁସ୍ତିକାରେ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ।

ଭୁବନେଶ୍ବର-୨
ତା ୧ । ୭ । ୭୭

ପଣ୍ଡିତ ବୈକୁଣ୍ଠ ନାଥ ପ୍ରତିହାରୀ
ସଂପାଦକ,
ହଟକେଶ୍ବର ସତ୍ସଙ୍ଗ ସେବାଶ୍ରମ ।

# ଆଧ୍ୟାତ୍ମିକ ସମାଜବାଦୀ ସଂଘ

ଆତ୍ମା ବା ଈଶ୍ୱର ବିଷୟକ ସାଧନ, ଚିନ୍ତନ, ଆଲୋଚନା, ଉପାସନା, ଧ୍ୟାନ ଓ ଜ୍ଞାନ ଇତ୍ୟାଦି କର୍ମକୁ ଆଧ୍ୟାତ୍ମିକତା କହନ୍ତି । ଏହା ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି, ପରିବାରନୀତିର ଆଦର୍ଶ ଓ ପରିମାପକ ଯନ୍ତ୍ର । ଏହା ଭାରତର ପ୍ରାକୃତିକ ନିଜସ୍ୱ, ବିଶେଷତ୍ୱ, ଶିକ୍ଷା, ସଭ୍ୟତା, ସଂସ୍କୃତି ଏବଂ ଜାତୀୟତା । ଏହା ଶାରୀରିକ, ମାନସିକ, ଆର୍ଥିକ, ସାମାଜିକ, ପାରିବାରିକ ସର୍ବାଙ୍ଗୀନ କଲ୍ୟାଣଦାୟକ । ତେଣୁ ଏହା ମାନବର ଚରମ ଲକ୍ଷ୍ୟ ଓ ମୁଖ୍ୟ ।

(୧) ଅହିଂସା, ସତ୍ୟ, ଚରିତ୍ରନିଷ୍ଠା, ସତ୍‌ଶାସ୍ତ୍ର ଅଧ୍ୟୟନ ଓ ଈଶ୍ୱର ବିଶ୍ୱାସ ବ୍ୟକ୍ତିନିଷ୍ଠା ଓ ସଂଘନିଷ୍ଠା ।

(୨) ଆଧ୍ୟାତ୍ମିକତା ଆଦର୍ଶରେ ସର୍ବଧର୍ମସମନ୍ୱୟ ଦୃଷ୍ଟିରେ ଦର୍ଶନ ବିଜ୍ଞାନ ପ୍ରତିପାଦିତ ବିଶୁଦ୍ଧ ସାର୍ବଜନୀନ ଧର୍ମ ଉକ୍ତ ସଂଘର ଉଦ୍ଦେଶ୍ୟ ।

(୩) ଧର୍ମ, ବିଶୁଦ୍ଧ ପରମ୍ପରା ବ୍ୟକ୍ତି ଓ ଦଳ ସ୍ୱାତନ୍ତ୍ର୍ୟ ସମର୍ଥକ ଗଣତାନ୍ତ୍ରିକ ସମାଜବାଦ ଉକ୍ତ ସଂଘ ସ୍ୱୀକାର କରେ ।

(୪) ତ୍ୟାଗ ମନୋଭାବାପନ୍ନ କର୍ମ ବିନିମୟରେ ପରସ୍ପର ସହାୟକ ସାମାଜିକ ଜୀବନଯାତ୍ରା ନିର୍ବାହ ଉପଯୋଗୀ ଅର୍ଥନୈତିକ ଉନ୍ନତି ଉକ୍ତ ସଂଘର ଉଦ୍ଦେଶ୍ୟ ।

(୫) ପ୍ରାକୃତିକ ବୈଷମ୍ୟ ଭିତରେ ଆଧ୍ୟାତ୍ମିକତା ଆଦର୍ଶରେ ସାମ୍ୟନୀତିର ପ୍ରଚାର ଓ ପ୍ରସାର କରିବା ଉକ୍ତ ସଂଘର ଉଦ୍ଦେଶ୍ୟ ।

(୬) ସତ୍‌ସଙ୍ଗୀ ଓ କର୍ମଯୋଗୀ ସଂଗଠନ ପୂର୍ବକ ସମାଜର ସେବା କରିବା ଉକ୍ତ ସଂଘର ଉଦ୍ଦେଶ୍ୟ ।

(୮) ଜାତି-ଧର୍ମ ନିର୍ବିଶେଷରେ ଉକ୍ତ ସଂଘର ସଭ୍ୟ ହୋଇ ପାରିବେ । ଯେଉଁମାନେ ସଭ୍ୟ ହେବେ ନିମ୍ନୋକ୍ତ ନିୟମ ସମୂହ ପାଳନ କରିବେ ।

୧- ଈଶ୍ୱର ଓ ଧର୍ମରେ ବିଶ୍ୱାସ ରଖିବେ ।

୨- ସରଳ ନିରାଡ଼ମ୍ବର ଜୀବନଯାତ୍ରା ନିର୍ବାହ କରିବେ ।

୩- ଅହିଂସା, ତ୍ୟାଗଭାବ, ଚରିତ୍ରନିଷ୍ଠା ଓ ଗୀତାଶାସ୍ତ୍ର ଅଧ୍ୟୟନ ଓ ମନନ କରିବେ ।

୪- ପ୍ରାତଃ ସନ୍ଧ୍ୟାରେ ଉପାସନା କରିବେ ।

ସର୍ବେ ଭବନ୍ତୁ ସୁଖିନ ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମାକଶ୍ଚିତ୍ ଦୁଃଖ ଭାଗ୍‌ଭବେତ୍ ।

ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ

**ହରିହର ସତ୍‌ସଙ୍ଗ ସେବାଶ୍ରମ**
ଭୁବନେଶ୍ୱର



# ଆଧ୍ୟାତ୍ମିକତା ଓ ସମାଜବାଦ

ଅଧ୍ୟାତ୍ମ ଜ୍ଞାନ ନିତ୍ୟତ୍ୱଂ ତତ୍ତ୍ୱ ଜ୍ଞାନାର୍ଥ ଦର୍ଶନଂ ।
ଏତଦ୍‌ଜ୍ଞାନ ମିତି ପ୍ରୋକ୍ତ-ମଜ୍ଞାନଂ ଯଦତୋଽନ୍ୟଥା ॥

ଯେଉଁ ଜ୍ଞାନ ଦ୍ୱାରା ନିତ୍ୟ ପଦାର୍ଥର ପ୍ରତିପାଦନ ପୂର୍ବକ ତତ୍ତ୍ୱଜ୍ଞାନର ସୂକ୍ଷ୍ମ ବସ୍ତୁର ଜନିତ ଅର୍ଥ ଜଣାଯାଏ ଏବଂ ଆତ୍ମଜ୍ଞାନ ପ୍ରତିଷ୍ଠା ଲାଭ କରେ । ଏହା କାୟ-ମନୋ ବାକ୍ୟରେ ଆଚରଣ କରିବା ଦ୍ୱାରା ବିଶ୍ୱ ଭ୍ରାତୃଭାବ ଜାଗ୍ରତ ହୁଏ । ସେଥିପାଇଁ ଏ ଜ୍ଞାନକୁ ଆତ୍ମଜ୍ଞାନ ବା ଆଧ୍ୟାତ୍ମଜ୍ଞାନ ବା ଆଧ୍ୟାତ୍ମିକତା କହନ୍ତି । ଅନ୍ୟଥା ଆଉ ଯେତେ ଯାହା ସବୁ ଅଜ୍ଞାନ ପଦବାଚ୍ୟ ।

ଆଉ ମଧ୍ୟ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ଅର୍ଥାତ୍ ବିଦ୍ୟାମାନଙ୍କ ମଧ୍ୟରେ ମୁଁ ଅଧ୍ୟାତ୍ମ-ବିଦ୍ୟା ତେଣୁ ଶ୍ରେଷ୍ଠ । କାରଣ ଏହା ମାନବକୁ ପରମ ସୁଖ ଶାନ୍ତି ପ୍ରଦାନ କରେ । ଅଧ୍ୟାତ୍ମବାଦୀକୁ ସୁଖ ଦୁଃଖ ଅଭିଭୂତ କରିପାରନ୍ତି ନାହିଁ । ଏହା ଦ୍ୱାରା ସମାଜର କଲ୍ୟାଣ ଇଚ୍ଛା ବଳବତୀ ହୁଏ; ଶାରୀରିକ, ମାନସିକ, ଆର୍ଥିକ ଓ ପାରିବାରିକ ସର୍ବାଙ୍ଗୀନ କଲ୍ୟାଣ ସାଧିତ ହୁଏ । ତେଣୁ ଅଧ୍ୟାତ୍ମବିଦ୍ୟା ମାନବ ଜୀବନରେ ବିଶେଷ ପ୍ରୟୋଜନ ।

ଆଧ୍ୟାତ୍ମିକତା ମାନବର ଚରମ ଲକ୍ଷ୍ୟ । ଆତ୍ମା ବା ଈଶ୍ୱର ବିଷୟକ ସାଧନା, ଉପାସନା, ବିଚାର, ଅଧ୍ୟୟନ, ଶ୍ରବଣ ଓ ଜ୍ଞାନ

ଇତ୍ୟାଦି ଅନୁସନ୍ଧାନକୁ ଆଧ୍ୟାତ୍ମିକତା କହନ୍ତି । ଏହା ମନୁଷ୍ୟ ଘ କରି ରହି ପାରେ ନାହିଁ । ଏହା ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି, ପରିବାରନୀତି ଓ ବ୍ୟକ୍ତିନୀତିର ଆଦର୍ଶ ଓ ପରିପାଳକ ଯନ୍ତ୍ର—ଶାରୀରିକ, ମାନସିକ, ଆର୍ଥିକ ଓ ପାରିବାରିକ ସର୍ବାଙ୍ଗୀନ ମଙ୍ଗଳଦାୟକ । କାରଣ ମାନବ ପ୍ରତ୍ୟକ୍ଷରେ, ପରୋକ୍ଷରେ, ଜ୍ଞାତରେ ଅଜ୍ଞାତରେ ବିଷୟବସ୍ତୁ ଭିତରେ, ସାଧନରେ, ବିଶ୍ବରରେ, ଉପାସନାରେ, ସେବାରେ ଯେଉଁ ଅଖଣ୍ଡାନନ୍ଦ ବା ଅମ୍ଳାନନ୍ଦ ବା ନିତ୍ୟାନନ୍ଦର ଅନୁସନ୍ଧାନ କରୁଅଛି, ସେହି ଆନନ୍ଦ ଆଧ୍ୟାତ୍ମିକତାକୁ ଆଶ୍ରୟ କରି ରହିଅଛି । ଉକ୍ତ ଆନନ୍ଦ ଆତ୍ମା ବା ଈଶ୍ୱରଙ୍କର ସ୍ୱରୂପ—ଯାହା ସତ୍ ବା ନିତ୍ୟ, ଚିତ୍ ବା ଜ୍ଞାନ ରୂପରେ ପ୍ରତିଭାତ ହେଉଅଛି । ଏହା ସର୍ବଶ୍ରେଷ୍ଠ ହେତୁ, ଈଶ୍ୱର ପଦବାଚ୍ୟ ।

ଏହାଙ୍କୁ ନ ଜାଣି ମନୁଷ୍ୟ ରହିପାରେ ନାହିଁ । କାରଣ ଏହାଙ୍କୁ ନ ଜାଣିଲେ ମନୁଷ୍ୟର ଜାଣିବା ପୂର୍ଣ୍ଣାଙ୍ଗ ହୁଏନାହିଁ । ତାଙ୍କ ବିଷୟରେ ଯେତିକି ଜାଣିବା ସେତିକି ଅବିଦ୍ୟା ବା ଅଜ୍ଞାନ ଜନିତ ଦୁଃଖ ତାପକୁ ଅତିକ୍ରମ କରିପିବା ଏବଂ ସେତିକି ସୁଖ ଶାନ୍ତିର ଅଧିକାରୀ ହେବା । ଆଧ୍ୟାତ୍ମିକତା ସାଧନ ସାପେକ୍ଷ । ଈଶ୍ୱର ଅନୁସନ୍ଧାନ ମାନବର ଧର୍ମ । ଏହି ଧର୍ମ ବିଶୁଦ୍ଧ ଏବଂ ସାର୍ବଜନୀନ । ତେଣୁ ଏହି ଧର୍ମକୁ ଆଶ୍ରୟ କରି ସମାଜରେ ବାସ କରିବାକୁ ହେବ ଏବଂ ସମାଜର ସେବା କରିବାକୁ ହେବ । ଈଶ୍ୱରଙ୍କୁ ନ ଜାଣିଲେ ମନୁଷ୍ୟକୁ ଜାଣିବା ପୂର୍ଣ୍ଣାଙ୍ଗ ହୁଏ ନାହିଁ । ତେଣୁ ସେବାରେ ତ୍ରୁଟି ହୁଏ ।

ସାମାଜିକ ଜୀବନରେ ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି ଓ ପରିବାରନୀତି ଭିତରେ ଗତି କରିବାକୁ ହୁଏ । କାଳସ୍ରୋତରେ

ମାନବର ପରିବର୍ତ୍ତନ ଅବଶ୍ୟମ୍ଭାବୀ କିନ୍ତୁ ପରିବର୍ତ୍ତନ ଭିତରେ ଆଧ୍ୟାତ୍ମିକତା ଆଦର୍ଶ ଜନିତ ସାମ୍ୟ ମୈତ୍ରୀ ଦୃଷ୍ଟିଭଙ୍ଗୀ ଠିକ୍ ରହିବା ଉଚିତ ।

ଏହି ନିତ୍ୟ, ଜ୍ଞାନ, ଆନନ୍ଦ ସ୍ୱରୂପ ଈଶ୍ୱରଙ୍କୁ ପ୍ରତ୍ୟେକ ମାନବ ତାର ସମସ୍ତ ଜୀବନକାଳ ମଧ୍ୟରେ, କେହି ବିଷୟ ବସ୍ତୁ ଭିତରେ, କେହି ଆଧ୍ୟାତ୍ମିକତା ଭିତରେ, କେହି ଧର୍ମନୀତି, ରାଜନୀତି ଇତ୍ୟାଦି ନୀତି ଭିତରେ ଅନୁସନ୍ଧାନ କରୁଅଛି । ସମସ୍ତେ ଦିନେ ଏହାକୁ ଉପଲବ୍ଧି କରିବେ, ମାତ୍ର କେହି ଶୀଘ୍ର ବା କେହି ବିଳମ୍ବରେ । ମାନବ ସବୁବେଳେ ଅମର ହୋଇ ରହିବାକୁ ଇଚ୍ଛା କରେ । କାରଣ ଅମରତ୍ତ୍ୱ ଆତ୍ମାର ସ୍ୱରୂପ । ମାତ୍ର ଶରୀରରେ ଆତ୍ମାର ଆରୋପ ହୋଇଥିବାରୁ ମୃତ୍ୟୁର ନାମ ଶୁଣିଲେ ଭୟ ଜାତ ହୁଏ । ତେଣୁ ମାନବ ଅମୃତ ସତ୍ୟ ବା ନିତ୍ୟର ଅନୁସନ୍ଧାନ କରୁଅଛି । ବିଜ୍ଞାନୀମାନଙ୍କର ଏହି ଅନୁସନ୍ଧିତ୍ସା ପ୍ରବୃତ୍ତି ନେଇ ସେ ସବୁ ଜାଣିବାକୁ ଚେଷ୍ଟା କରୁଅଛି । ଯେତେବେଳେ ପୃଥିବୀ, ଜଳ, ତେଜ, ବାୟୁ ଆକାଶ ଏବଂ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ଏପରିକି ସମୁଦାୟ ବ୍ରହ୍ମାଣ୍ଡ ତାର ଅଜ୍ଞାତ ସତ୍ତା ବା କାରଣ ଜାଣିବାକୁ ଇଚ୍ଛା କରୁଅଛି । ସେଥିପାଇଁ ମାନବର ମୁଖ ଊର୍ଦ୍ଧ୍ୱକୁ । ମାନବେତର ଯେତେ ପ୍ରାଣୀ ସମସ୍ତଙ୍କ ମୁଖ ତଳକୁ ।

ଏହି ଊର୍ଦ୍ଧ୍ୱ ଦୃଷ୍ଟି ବା ଊର୍ଦ୍ଧ୍ୱ ଗମନକୁ ଈଶ୍ୱର ଲାଭ କହନ୍ତି । ଏହି ଈଶ୍ୱର ଲାଭର କେବଳ ମାନବ ଅଧିକାରୀ । ତା'ପରେ ମନୁଷ୍ୟ ସବୁବେଳେ ଆନନ୍ଦରେ ରହିବାକୁ ଇଚ୍ଛାକରେ ଯାହାକୁ ଅଖଣ୍ଡାନନ୍ଦ ବା ଆତ୍ମାନନ୍ଦ କହନ୍ତି । ଯେଉଁ ଆତ୍ମାନନ୍ଦ କ୍ଷଣକ ପାଇଁ ଅନୁଭୂତ ହେଲେ ମାନବ ବିଷୟଭୋଗ ଜନିତ ନିମ୍ନତମ ଆନନ୍ଦ ପ୍ରତି ଉଦାସୀନ ହୋଇଯାଏ । ସଂସାରରେ ରହି ସେ ଅନାସକ୍ତ ଭାବରେ

କର୍ମ କରେ । ତେଣୁ ଧର୍ମ-ଅଧର୍ମ; ଜ୍ଞାନ-ଅଜ୍ଞାନ; ବୈରାଗ୍ୟ-ଅବୈରାଗ୍ୟ; ଐଶ୍ୱର୍ଯ୍ୟ ଅନୈଶ୍ୱର୍ଯ୍ୟ; ପାପ-ପୁଣ୍ୟ ଇତ୍ୟାଦି ସାକ୍ଷୀ ରୂପରେ ଦେଖି ବିଗ୍ରହ'କରି ସଦାନନ୍ଦରେ କାଳାତିପାତ କରେ । ଜୀବ ଆନନ୍ଦ ଲାଭ ପାଇଁ ନୀତି, ଅନୀତି, ସୁନୀତି, ଦୁର୍ନୀତି, ଧର୍ମ, ଅଧର୍ମ ଜ୍ଞାନ, ଅଜ୍ଞାନ ଇତ୍ୟାଦି ମାନବ ଆଚରଣ କରେ । ମାତ୍ର ସଦ୍‌ଗୁଣ ଜନିତ ଆନନ୍ଦ ସୃଜନାତ୍ମକ ଓ ପାଳନାତ୍ମକ । ଅସଦ୍‌ଗୁଣ ଜନିତ ଆନନ୍ଦ କ୍ଷଣସ୍ଥାୟୀ—ପରିଣାମରେ ଅତ୍ୟନ୍ତ ଦୁଃଖ ଦାୟକ ଓ ଧ୍ୱଂସାତ୍ମକ ହେତୁ ସମାଜ ବିରୋଧୀ । ମାତ୍ର ପ୍ରତ୍ୟେକଙ୍କର ଉଦ୍ଦେଶ୍ୟ ଅଖଣ୍ଡାନନ୍ଦ ଲାଭ । ତେଣୁ ମାନବ ଜ୍ଞାନର ବିକାଶ ସଙ୍ଗେ ସଙ୍ଗେ ପରିଣାମ ଦୁଃଖଦାୟକ ହେତୁ ଆଉ ଗୋଟିଏ ଆନନ୍ଦର ଅନୁସନ୍ଧାନ କରେ । ଯେତେବେଳେ ଗୋଟିଏ ଉଚ୍ଚତମ ଆନନ୍ଦର ଉପଲବ୍ଧି ହୁଏ ସେତେବେଳେ ନିମ୍ନତମ ଆନନ୍ଦ ଆଉ ଭଲ ଲାଗେ ନାହିଁ । ଯେପରି ବାଲ୍ୟାବସ୍ଥାର ଆନନ୍ଦ କିଶୋର ଅବସ୍ଥାରେ, କିଶୋରାବସ୍ଥାର ଆନନ୍ଦ ଯୌବନ ଅବସ୍ଥାରେ, ଯୌବନାବସ୍ଥାର ଆନନ୍ଦ ପ୍ରୌଢ଼ାବସ୍ଥାରେ, ପ୍ରୌଢ଼ାବସ୍ଥାର ଆନନ୍ଦ ବୃଦ୍ଧାବସ୍ଥାରେ ଭଲ ଲାଗେନାହିଁ । କାରଣ ଏହି ମନ, ବୁଦ୍ଧି ଓ ଅହଂକାର ବିଶିଷ୍ଟ ଜୀବ ତାର ସ୍ୱରୂପ ଯେଉଁ ଅଖଣ୍ଡାନନ୍ଦରୁ ସେ ଉତ୍ପନ୍ନ ହୋଇଅଛି, ସେହି ଅଖଣ୍ଡାନନ୍ଦର ଅନ୍ୱେଷଣ କରୁଅଛି । ସେଥିପାଇଁ ଗୀତାରେ ଅଛି—"ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ, ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ।" ଯାହାକୁ ଲାଭ କଲେ ଅନ୍ୟ କିଛି ଅଧିକ ଲାଭ ଅଛି ବୋଲି ମନେ ହୁଏ ନାହିଁ, ଯେଉଁଠାରେ ମନ ବୁଦ୍ଧି, ବିବେକ, ବିଗ୍ରହ ଅବସ୍ଥାନ କଲେ ଅତି ଗୁରୁ ଦୁଃଖ ଆସିଲେ ମଧ୍ୟ ମାନବକୁ ବିଚଳିତ କରି ପାରେ ନାହିଁ ।

ଏହି ସଚ୍ଚିଦାନନ୍ଦ ରୂପ ଈଶ୍ୱର ବା ଆତ୍ମାର ଅନୁସନ୍ଧାନ ରୂପ କର୍ମଯୋଗ, ଉପାସନା ଯୋଗ, ଭକ୍ତି ଯୋଗ, ରାଜଯୋଗ, ଜ୍ଞାନଯୋଗ, ଅଧ୍ୟୟନ ଓ ଶ୍ରବଣ ଯୋଗ, ବିଚାର ଯୋଗ ଇତ୍ୟାଦି ଆଧ୍ୟାତ୍ମିକତା ମାନବର ଚରମ ଲକ୍ଷ୍ୟ । ଉକ୍ତ ଆତ୍ମା ବା ଈଶ୍ୱରଙ୍କୁ ଲାଭ କରିବା ପାଇଁ ଚୌରାଶି ଲକ୍ଷ ଯୋନି ଭ୍ରମଣ କରି କରି ଜୀବ ମାନବ ରୂପରେ ଜନ୍ମଲାଭ କରି କେବଳ ଆହାର, ନିଦ୍ରା, ମୈଥୁନ ଇତ୍ୟାଦିରେ ଆସକ୍ତ ନ ହୋଇ ଅଧୋଦୃଷ୍ଟି ଛାଡ଼ି ଊର୍ଦ୍ଧ୍ୱ ଦୃଷ୍ଟି ସମ୍ପନ୍ନ ହୋଇଅଛି । ସେ ପୁଣି ଆହୁରି ଉପରକୁ ଯିବ । ସେ ଏହି ବ୍ରହ୍ମାଣ୍ଡ ଏବଂ ବ୍ରହ୍ମାଣ୍ଡର ଅତୀତ ସତ୍ତାର ଚିନ୍ତା କରିବ । ତାକୁ କେହି ବାଧା ଦେଇ ପାରିବେ ନାହିଁ । ସେ ଅମୃତ ସ୍ୱରୂପ, ଚୈତନ୍ୟ ସ୍ୱରୂପ ଆନନ୍ଦ ସ୍ୱରୂପ ଆତ୍ମାରେ ଆତ୍ମସ୍ଥ ହେବ । କାରଣ ଏହା ଜୀବର ସ୍ୱଭାବ ବା ଧର୍ମ । ସେ ନିଜକୁ ନିଜେ ବିଷୟବସ୍ତୁ ଭିତରେ, ଆଧ୍ୟାତ୍ମିକତା ଭିତରେ ଅନୁସନ୍ଧାନ କରୁଅଛି । ବିଷୟବସ୍ତୁ ଭିତରେ ଠକି ଶିଖି ତାହା ବିଳମ୍ବରେ ଲାଭ କରିବ । ଆଧ୍ୟାତ୍ମିକତା ଭିତରେ ଶୀଘ୍ର ଲାଭ କରିବ ଏବଂ ଏହା ସର୍ବାଙ୍ଗୀନ କଲ୍ୟାଣଦାୟକ ଓ ଆନନ୍ଦ ଦାୟକ । ତେଣୁ ଏହି ସଚ୍ଚିଦାନଂଦ ରୂପ ଈଶ୍ୱରଙ୍କ ଠାରେ ଦୃଢ଼ ଭକ୍ତି ବିଶ୍ୱାସ ରଖିଲେ ପ୍ରତି କ୍ଷେତ୍ରରେ ବହୁ ବାଧା ବିଘ୍ନ ଅତିକ୍ରମ କରିହୁଏ ।

ଆମ୍ଭେମାନେ ସମାଜରେ ବାସ କରୁ ଏବଂ ସାମାଜିକ ଜୀବନ ଯାପନ କରୁ । ତେଣୁ ଆମେ ସମାଜବାଦୀ । ସାମାଜିକ ନ୍ୟାୟ ପ୍ରତିଷ୍ଠା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ମାତ୍ର ଆତ୍ମାର ଆଦର୍ଶରେ ଆଧ୍ୟାତ୍ମିକ ମନୋଭାବ ଏବଂ ଆଚରଣ ଯେତିକି ବ୍ୟାପକ ହେବ, ସମାଜରେ ସେତିକି ନ୍ୟାୟ ପ୍ରତିଷ୍ଠା ଲାଭ କରିବ । "ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜ୍ଜୁନ, ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋମତଃ ।" ଆତ୍ମା ସଦୃଶ ସବୁଠାରେ ଯେ ସମସ୍ତଙ୍କୁ ସମାନ

ଭାବରେ ଦେଖନ୍ତି; ନିଜେ ସୁଖ ଦୁଃଖ ଯେପରି ଅନୁଭବ କରେ ସମସ୍ତେ ସେହିପରି କରନ୍ତି ଏହା ଯେ ଜ୍ଞାନ କରେ, ସେ ଯୋଗୀ ଏହା ଉତ୍କୃଷ୍ଟ ମତ । ଏହି ହେଲା ସମାଜବାଦ ବା ସାମ୍ୟବାଦ । ଆଜି ମଧ୍ୟ "ବିଦ୍ୟା ବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବିହସ୍ତିନି, ଶୁନି-ଚୈବ ସ୍ୱପାକେ ଚ ପଣ୍ଡିତଃ ସମଦର୍ଶିନଃ ।" ଏହି ଆଦର୍ଶ, ଏହି ମନୋଭାବ ଏବଂ ଆଚରଣ ସାମାଜିକ ନ୍ୟାୟ ପ୍ରତିଷ୍ଠାର ମୂଳଭିତ୍ତି ।

ବେଦ କହେ—ସୋଽକାମୟତ । ଏକୋଽହଂ ବହୁସ୍ୟାଂ ପ୍ରଜାୟେୟ । ସେହି ଏକ ଅନାଦି ଅଜନ୍ମା ପୁରୁଷ ବହୁ ରୂପରେ ପ୍ରକାଶିତ ହେବାକୁ କାମନା କଲେ ବା ଇଚ୍ଛା କଲେ ।

ତେଣୁ ତାଙ୍କର ସ୍ୱରୂପ ଚରାଚର ସମସ୍ତ ବ୍ରହ୍ମାଣ୍ଡରେ ବ୍ୟାପୀ କରି ଅଛି । ଏହି ଅମୃତ, ଜ୍ଞାନ ଏବଂ ଆନନ୍ଦ ରୂପ ଏକ ଅନାଦି ଈଶ୍ୱରଙ୍କ ଠାରୁ ଏହି ସମସ୍ତ ସଂସାର ସୃଷ୍ଟି ହୋଇଅଛି । ଏହାର ଉପରେ ସ୍ଥିତି ଓ ପାଳନ ଏହାଠାରେ ଲୟ । ଜୀବ ଜଗତରେ ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଆକାରରେ ଜୀବର କ୍ରମ ବିକାଶ ବା କ୍ରମ ବିବର୍ତ୍ତନର କାରଣ ଏହି ସଚ୍ଚିଦାନନ୍ଦ ରୂପ ଈଶ୍ୱର । ବହୁ ଜନ୍ମରୁ ସଂଚିତ ସଂସ୍କାର ଜନିତ ମାନବ ଜାତିରେ ମୃତ୍ୟୁ ଭୟ, ଜିଜ୍ଞାସା ବା ଜାଣିବା ଇଚ୍ଛା ଏବଂ ସଦାନନ୍ଦର ବିକାଶ ବିଶେଷ ଭାବରେ ଦେଖାଯାଏ । ବହୁ ଜନ୍ମରୁ ସଂଚିତ ମୃତ୍ୟୁ ଯନ୍ତ୍ରଣା ମନୁଷ୍ୟର ଅବଚେତନା ସ୍ତରରେ ରହି ମୃତ୍ୟୁକୁ ସର୍ବଦା ଭୟ କରୁଥାଏ ମାନବ, ପଶୁପକ୍ଷୀ ମାନଙ୍କ ଅପେକ୍ଷା ବୁଦ୍ଧି ବଳରେ ଇନ୍ଦ୍ରିୟଗ୍ରାହ୍ୟ ଭୋଗ୍ୟ ବସ୍ତୁରେ ଅଧିକତର ଆନନ୍ଦ ଲାଭ କରିଥାଏ । ତେଣୁ ବୁଦ୍ଧି ବା ଜ୍ଞାନ ସର୍ବଶ୍ରେଷ୍ଠ । ମାତ୍ର ବୈଷୟିକ ଆନନ୍ଦରେ ତୃପ୍ତି ଲାଭ କରି ନ ପାରି ନୂଆ ନୂଆ ଆନନ୍ଦର ଅନୁସନ୍ଧାନ କାମ କାଂଚନ ଭିତରେ

ଅନ୍ୱେଷଣ କରୁ କରୁ ଯେବେ ତାର ଜାଣିବା ଇଚ୍ଛା ତାକୁ ପ୍ରକୃତ ଆନନ୍ଦ ଲାଭର ବାଟ ଦେଖାଇ ଦିଏ । ଏହା ସତ୍‌ସଂଗ ଓ ସତ୍‌ଶାସ୍ତ୍ର ଅଧ୍ୟୟନରୁ ଲାଭ ହୋଇଥାଏ । ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧି ରୂପକ ସାର୍ବଜନୀନ ଦୁଃଖରୁ ରକ୍ଷା ପାଇବାକୁ ସେ ବ୍ୟାକୁଳ ହୁଏ । ତେଣୁ ସେ ଅମୃତତ୍ତ୍ୱ, ଜ୍ଞାନ ଏବଂ ଆତ୍ୟନ୍ତିକ ସୁଖର ଅନୁସନ୍ଧାନ କରେ । ତେଣୁ ଆଧ୍ୟାତ୍ମିକତାର ଆଶ୍ରୟ ନିଏ । ଏହାର ଆଶ୍ରୟରେ ବ୍ୟକ୍ତି-ଗତ, ସାମାଜିକ ଜୀବନରେ ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ବିକାଶ ହୁଏ । ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି ଓ ପରିବାର ନୀତି ସୁଶୃଙ୍ଖଳ ଓ ସୁସଂଯତ ଭାବରେ ପରିଚାଳିତ ହୁଏ ।

ସଚ୍ଚିଦାନନ୍ଦ ରୂପ ଈଶ୍ୱର ବହୁ ଜୀବ ରୂପରେ ବ୍ୟକ୍ତ ବା ପ୍ରକାଶ ହେଉଥିବା ସେ ଅନୁଭବ କରେ । ତେଣୁ ଅହିଂସା ଭାବ ଜାଗ୍ରତ ହୁଏ । ହୃଦୟରେ ହିଂସାର ଭାବ ବା ହିଂସାର ତରଙ୍ଗ କେତେବେଳେ ଉଠେ ନାହିଁ । ତାର ଦୃଷ୍ଟିରେ କେହି ଶତ୍ରୁ ନୁହେଁ । ଏପରିକି ତାକୁ କେହି ହିଂସା କଲେ, ପ୍ରତିହିଂସା ଦେହଧାରୀ ହେତୁ ଜାଗ୍ରତ ହୁଏ, ମାତ୍ର ସଙ୍ଗେ ସଙ୍ଗେ ତାହା ଲୀନ ହୋଇଯାଏ— ଶାରୀରିକ କାର୍ଯ୍ୟକାରୀ ହୋଇପାରେ ନାହିଁ ।

ଅଗ୍ନିଦୋ ଖରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହାଃ ।
କ୍ଷେତ୍ରଦାରାପହାରୀ ଚ ଷଡ଼େତେ ଆତତାୟିନଃ ॥

ଗୁରୁଂ ବା ବାଳ ବୃଦ୍ଧୌ ବା ବ୍ରାହ୍ମଣଂ ବା ବହୁଶ୍ରୁତଂ ।
ଆତତାୟିନ ମାୟାନ୍ତଂ ହନ୍ୟାଦେବା ବିଚାରୟନ୍ ॥

ନ ବିଶେଷୋଽସ୍ତି ବର୍ଣ୍ଣାନାଂ ସର୍ବବ୍ରହ୍ମମିଦଂ ଜଗତ୍ ।
ବ୍ରହ୍ମଣା ପୂର୍ବ-ସୃଷ୍ଟଂ ହି କର୍ମଭିର୍ବର୍ଣ୍ଣତାଂ ଗତଂ ॥

ମାତ୍ର ସମାଜ ବିରୋଧୀ କାର୍ଯ୍ୟରେ ବ୍ୟାପୃତ ଥିବା ଯେ କୌଣସି ଆତତାୟୀ ବ୍ୟକ୍ତିର ହତ୍ୟାରେ ଉଦ୍‌ବେଗ ବା ଦୁଃଖ ଆସେ ନାହିଁ । ବ୍ୟାବହାରିକ ଜୀବନରେ ସମାଜକୁ ରକ୍ଷା କରିବା ପାଇଁ ଅନେକ ସ୍ଥାନରେ ସାଧାରଣ ଦୃଷ୍ଟିରେ ଏହା ହିଂସା ବୋଲି ମନେ ହୁଏ ମାତ୍ର ତାହା ହିଂସାନୁହେଁ । କାରଣ ତାହାଦ୍ୱାରା ଗଠନ ଏବଂ ପାଳନ ଦୃଷ୍ଟିରୁ ସମାଜର ବିକାଶ ହୋଇଥାଏ ।

ସମାଜର ସାଧାରଣ ଜୀବନରେ ସତ କହିବା କଥାଟି ପିଲାଙ୍କ ପ୍ରାର୍ଥନା ଠାରୁ ଆରମ୍ଭ କରି ସାଧାରଣ ଓ କୋର୍ଟ କଚେରୀ ପର୍ଯ୍ୟନ୍ତ ପ୍ରାୟ ସବୁଠାରେ ଶୁଣିବାକୁ ମିଳେ । ଯୋଗଚର୍ଯ୍ୟାରେ ମଧ୍ୟ ପାତ-ଞ୍ଜଳି ତାଙ୍କ ଯମରେ ଅହିଂସା, ସତ୍ୟ, ଅସ୍ତେୟ (ଚୋରି ନ କରିବା) ବ୍ରହ୍ମଚର୍ଯ୍ୟ ବା ଚରିତ୍ରନିଷ୍ଠା, ଅପରିଗ୍ରହ (କର୍ମ ନିମନ୍ତପୂରେ ଜୀବନଯାପନ କରିବା)କୁ ବିଶେଷ ଭାବରେ ସ୍ଥାନ ଦେଇଛନ୍ତି । ଏ ଗୁଡିକ ଯେ କୌଣସି ଆଧ୍ୟାତ୍ମିକ ସାଧନର ମୂଳଭିତ୍ତି । ମାତ୍ର ସମାଜ ଦୃଷ୍ଟିରୁ ବିଚାର କଲେ "ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନ ବ୍ରୂୟାତ୍ ସତ୍ୟମପ୍ରିୟଂ ।" ସତ କହିବ ଯାହା ପ୍ରିୟ ହୋଇଥିବ କିନ୍ତୁ ଅପ୍ରିୟ ସତ୍ୟ କହିବ ନାହିଁ । ତେବେ କଅଣ କରିବ ? ଚୁପ୍ ରହିବ ? କାରଣ ଅପ୍ରିୟ ସତ୍ୟ କହି ଯଦି କାହାର ମନରେ ଦୁଃଖ ହେଲା ଏବଂ ତାର ପ୍ରତିକ୍ରିୟା ସ୍ୱରୂପ ସେ ତୁମ ଉପରେ ପ୍ରତିଶୋଧ ବି ନେଇପାରେ । ତଥାପି ସତ୍ୟ କହି ଜଣଙ୍କର ଅନିଷ୍ଟ ହେବା ସତ୍ତ୍ୱେ ଦଶଜଣଙ୍କର ମଙ୍ଗଳ ହେଲା । ତେବେ ସେଠାରେ ସତ୍ୟ ଅପ୍ରିୟ କଥା କହିବାକୁ ଭୟ କରିବ ନାହିଁ । ସେହିପରି ମିଥ୍ୟା କହି ଜଣଙ୍କର ଅନିଷ୍ଟ ହେଲା, ଦଶଜଣଙ୍କର ମଙ୍ଗଳ ହେଲା; ସେଠାରେ ମିଛ କହିବା ପାପ ନୁହେଁ । ଆଜି ମଧ୍ୟ ଜଣ ଜଣଙ୍କ ମଙ୍ଗଳ ଦୃଷ୍ଟିରୁ ମିଥ୍ୟା କହିବା ପାପ ନୁହେଁ ବୋଲି ମହାଭାରତରେ ବର୍ଣ୍ଣିତ ଅଛି ।

ଯଥା:—ବିବାହକାଳେ ରତି ସଂପ୍ରୟୋଗେ, ପ୍ରାଣ ତ୍ୟୟେ, ସର୍ବଧନାପହାରେ । ବିପ୍ରସ୍ୟ ଚାର୍ଥେହ୍ୟନୃତମେବ କାର୍ଯ୍ୟମ୍ ପଞ୍ଚାନୃତାନ ନ ଚ-ପାତକାନ । ବିବାହ ବିଷୟରେ, ମୈଥୁନ ବିଷୟରେ, କାହାର ପ୍ରାଣ ରକ୍ଷା ହୋଇଯିବ ।ବେଳେ, ସବୁ ଧନ ନଷ୍ଟ ହୋଇଯିବା ବେଳେ ବ୍ରାହ୍ମଣଙ୍କ ସ୍ୱାର୍ଥ ରକ୍ଷା ପାଇଁ ମିଥ୍ୟ କହିଲେ ପାପ ଲଗେ ନାହିଁ । ମାତ୍ର ଅନେକ ଅଛନ୍ତି ନିଜର ମର୍ଯ୍ୟାଦା ବଢ଼ାଇବା ପାଇଁ ଖାଲି ଅଯଥା ମିଥ୍ୟା କଥା ଗୁଡ଼ିଏ କହନ୍ତି । ଏମାନେ ପଛରେ ଲଜ୍ଜା ପାଆନ୍ତି । ଶେଷରେ ଘୃଣ୍ୟ ହୁଅନ୍ତି । ସମାଜରେ ସତ୍ୟ ମିଥ୍ୟା ରହିବ । ମାତ୍ର ସତ୍ୟ, ସତ୍ୟ । ମିଥ୍ୟା, ମିଥ୍ୟା । ସତ୍ୟ, ମିଥ୍ୟା ହୋଇ ପାରିବ ନାହିଁ କି ମିଥ୍ୟା, ସତ୍ୟ ହୋଇ ପାରିବ ନାହିଁ । ଯୁଧିଷ୍ଠିର ମିଥ୍ୟା କହିବାରୁ ଦ୍ରୋଣ ହତ ହେଲେ । ମାତ୍ର ଯୁଧିଷ୍ଠିର କହିଥିଲେ ବୋଲି ମିଥ୍ୟାଟା ସତ୍ୟ ହେଲା ନାହିଁ । ସେଥିପାଇଁ ଯୁଧିଷ୍ଠିର ଅନୁତାପ କଲେ ଏବଂ ନରକ ଦର୍ଶନ କଲେ । ଧର୍ମ-ବିରୋଧୀ, ନ୍ୟାୟ-ବିରୋଧୀ, ସମାଜ-ବିରୋଧୀ, ପକ୍ଷପାତି, ଆତତାୟୀ, ଗୁରୁ ବ୍ରାହ୍ମଣ ହେଲେ ମଧ୍ୟ ବଧ୍ୟ । ଏଠାରେ ଆଧ୍ୟାତ୍ମିକତା ମାନଦଣ୍ଡରେ ନୈତିକତା ଓ ନ୍ୟାୟର ଦୃଷ୍ଟିଭଙ୍ଗୀ ଅଛି, ଅଛି ଆଧ୍ୟାତ୍ମିକ ସମାଜବାଦୀ ଶ୍ରୀକୃଷ୍ଣଙ୍କର ଆଦେଶ । କାରଣ ରାଜନୀତିରେ ସାମ, ଦାନ, ଦଣ୍ଡ ଓ ଭେଦ ଚାରି ନୀତିର ଆଶ୍ରୟ ନେବାକୁ ହେବ । ମାତ୍ର ସାମ ଓ ଦାନ ଯେତେ ପ୍ରବଳ ହେବ ଦଣ୍ଡ ଓ ଭେଦ ସେତେ ସଂକୁଚିତ ହୋଇଯିବ ।

ଆଧ୍ୟାତ୍ମିକ ସମାଜବାଦ କହେ ଯାହା କରୁଚ କର । ମାତ୍ର ଆତ୍ମ ତାତ୍ପର୍ଯ୍ୟ ଦୃଷ୍ଟ୍ୟାଚକ୍ଷୁଦ୍ର ବ୍ୟକ୍ତିତ୍ୱ ମାତରେତ୍ । ଆତ୍ମ ତାତ୍ପର୍ଯ୍ୟ ଦୃଷ୍ଟିରେ ଆତ୍ମ ଦୃଷ୍ଟି, ଆତ୍ମ ଚିନ୍ତନ, ଆତ୍ମ-ପ୍ରଣିଧାନ, ଆତ୍ମ-ବିଷୟକ ଶ୍ରବଣ, ମନନ କରି କ୍ଷୁଦ୍ର ବ୍ୟକ୍ତିତ୍ୱ ଅର୍ଥାତ୍ ମିଥ୍ୟା, ଠାଉଟର

ଯାହା ଆଚରଣ କରିପାରି ଦୋଷ ଲାଗିବ ନାହିଁ । କାରଣ ତୁମର ଇନ୍ଦ୍ରିୟରେ ଆସକ୍ତି ନାହିଁ । ତୁମେ ଯାହା କରିବ, ତାହା ସମାଜ ବିରୋଧୀ ନ ହୋଇ ସମାଜର ଅନୁକୂଳ ହେବ ।

ବ୍ରହ୍ମଚର୍ଯ୍ୟ ବା ଚରିତ୍ର ନିଷ୍ଠା : ଏହା ବ୍ୟାବହାରିକ, ସାମାଜିକ ଓ ଆଧ୍ୟାତ୍ମିକ ଜୀବନରେ ତେଜ, ବୀର୍ଯ୍ୟ, ବଳ, ସାମର୍ଥ୍ୟ, ସାହସ, ଶୀତ, ଉଷ୍ଣ, ସୁଖ ଓ ଦୁଃଖରେ ସହନଶୀଳତା ଓ ଅସାଧ୍ୟ ସାଧନ ପଥରେ ଅପ୍ରତିହତ ଗତି ପ୍ରଦାନ କରେ । ଏହାର ଉପକାର ଏବଂ ପ୍ରତ୍ୟୋଜନୀୟତା ଅନିର୍ବଚନୀୟ । ଏହାର ଅଭାବରେ କୌଣସି ସାଧନା ସିଦ୍ଧି ଲାଭ କରିପାରେ ନାହିଁ । କାମ ଦୁରନ୍ତ ରିପୁ । ଏହାର ଉତ୍ତେଜନା ଉଦ୍ରେକ ହେଲେ ସମସ୍ତ ବୁଦ୍ଧି ବିଚାର ତଳେ ପଡ଼ିଯାଏ । ଏହା ଦିଲ୍ଲୀର ଲଡ଼ୁ । ଯେ ଖାଇଛି ସେ ଅନୁତାପ କରୁଛି, ଯେ ନ ଖାଇଛି ସେ ମଧ୍ୟ ଅନୁତାପ କରୁଛି । ଏହାକୁ ସଂଯତ କରିବା ଅତି କଷ୍ଟସାଧ୍ୟ । ପୂର୍ବାଚାର୍ଯ୍ୟମାନେ ଏଥିପାଇଁ ବହୁ ବିଧି ବିଧାନ ନିର୍ଦ୍ଦେଶ କରି ଯାଇଛନ୍ତି । ଆଧ୍ୟାତ୍ମିକ ସାଧନ, ବିଚାର, ସତ୍ସଂଗ ଓ ସଦ୍‌ଶାସ୍ତ୍ର ଅଧ୍ୟୟନ ଜନିତ ଉତ୍କୃଷ୍ଟତର ଆନନ୍ଦ ଲାଭରେ ଏହି କ୍ଷଣିକ ଉତ୍ତେଜନା ଜନିତ କ୍ଷଣିକ ନିମ୍ନତମ ଆନନ୍ଦ ପରିଣାମରେ ଶାରୀରିକ, ମାନସିକ ଓ ବୌଦ୍ଧିକ ଅବସାଦ ଓ ଦୁଃଖଦାୟକ ଉତ୍ତେଜନା କ୍ଷୀଣ ହୋଇଯାଏ, ମାତ୍ର ଦେହଧାରୀ ହେତୁ ସାମୟିକ ତରଙ୍ଗ ଉଠେ ।

ସେଥିପାଇଁ ଏକ ନାରୀ, ସଦା ବ୍ରହ୍ମଚାରୀ । ଏକ ନାରୀ ବ୍ରତ ହୋଇ ଋତୁ ଦିବସ, ପର୍ବ ଦିବସ ପାଳନ ପୂର୍ବକ ମାସରେ ଥରେ କିମ୍ବା ଦୁଇଥର 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା', ଏହି ଉଦ୍ଦେଶ୍ୟରେ ଗୃହସ୍ଥ ଧର୍ମ ପାଳନ କଲେ ଅସାଧ୍ୟ ସାଧନ କରିବାକୁ ଲୋକ ସମର୍ଥ

ହୁଏ, ସଂସାରରେ ଅପ୍ରତିହତ ଗତିରେ ବିଚରଣ କରିବା ଜନ୍ୟ ନିରୋଧର ପ୍ରୟୋଜନ ହୁଏ ନାହିଁ । ଏହା ଶାରୀରିକ ମାନସିକ ଓ ବୈଦ୍ଧିକ ଅବସାଦ ଓ ଦୁଃଖଦାୟକ ଏବଂ ଭାବ ପ୍ରତିଷ୍ଠା ଲାଭ କରେ ।

କିନ୍ତୁ ଗୃହୀ ଜୀବନ ବା ଅବିବାହିତ ଜୀବନରେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରିବା ବିଧେୟ । ଗୃହାବସ୍ଥାରେ ବ୍ରହ୍ମଚର୍ଯ୍ୟ ଜନିତ ଆନନ୍ଦ ଲାଭ କରିଥିଲେ, ଗାର୍ହସ୍ଥ୍ୟ ଜୀବନରେ ତାର ସଦୁପଯୋଗ ହୋଇଥାଏ । ଗୃହସ୍ଥ ଭାବରେ ବ୍ରହ୍ମଚାରୀ ଜୀବନ ଯାପନ କରେ, ମାତ୍ର ଆଧ୍ୟାତ୍ମିକ ସାଧନ ଜନିତ ଆନନ୍ଦ ଲାଭ ହେଲେ ପ୍ରତିଷ୍ଠା ଲାଭ କରେ ।

ଜନନେନ୍ଦ୍ରିୟର ଉତ୍ତେଜନା ବୃଦ୍ଧି ବା ହ୍ରାସ ପାଇଁ ରସନେନ୍ଦ୍ରିୟ ଅନେକାଂଶରେ ଦାୟୀ । ପ୍ରଥମରୁ ଏହାକୁ ଅସ୍ୱାଦୁ ବ୍ରତରେ ଦୀକ୍ଷିତ କରିବା ଉଚିତ । ଉତ୍ତେଜକ ମସଲା, ପିଆଜ, ରସୁଣ ଓ ଅଲଗା ଲୁଣର ବ୍ୟବହାର କରିବା ଉଚିତ ନୁହେଁ । ମାଛ ଓ ମାଂସ ବ୍ୟବହାର କରାଯାଇପାରେ ମାତ୍ର ହଳଦୀ ଓ ଲୁଣରେ ସିଦ୍ଧ କରି ଖାଇବା ଉଚିତ । ରବିବାର, ମଙ୍ଗଳବାର, ଶନିବାର ଓ ଗୁରୁବାରରେ ଖାଇବା ନିଷେଧ । କାରଣ ସୂର୍ଯ୍ୟବାସରରେ ଖାଇଲେ ଶରୀରକୁ ଗରମ କରେ । ତେଣୁ ପ୍ରଥମେ ରସନେନ୍ଦ୍ରିୟକୁ ସଂଯତ କରିବା ଉଚିତ ।

ଆହାର, ନିଦ୍ରା ଓ ମୈଥୁନ ଇତ୍ୟାଦି ଭୋଗ୍ୟ ବିଷୟ, ଆଧ୍ୟାତ୍ମିକ ସାଧନରେ ପଶୁ ଭାବ, ନର ଭାବ ଅତିକ୍ରମ କରି ଦେବ ଭାବରେ କାର୍ଯ୍ୟକାରୀ ହୋଇଥାଏ । ସାଧନ କ୍ଷେତ୍ର ଶରୀରକୁ ସର୍ବଦା ସାଧନ ଉପଯୋଗୀ ଶୀତ, ଉଷ୍ଣ, ସୁଖ ଓ ଦୁଃଖରେ ସହନଶୀଳ

କରେ । ସ୍ୱାଦୁ, ଅସ୍ୱାଦୁରେ ଉଦାସୀନତା ପ୍ରକାଶ ପାଏ । ସାଧକ ବ୍ୟକ୍ତି ରସନେନ୍ଦ୍ରିୟକୁ ସଂଯତ କରିବାକୁ ଚେଷ୍ଟା କଲେ ବା ପ୍ରତିଜ୍ଞା କଲେ ହୋଇ ପାରେ ନାହିଁ, କେବଳ କଥାରେ ହିଁ ପର୍ଯ୍ୟବସିତ ହୁଏ । କାରଣ ସାଧନ ଜନିତ ଆନନ୍ଦରୁ ଅସ୍ୱାଦର ପ୍ରତିଷ୍ଠା ହୁଏ । ତେଣୁ ଜନନେନ୍ଦ୍ରିୟ ଆପେ ଆପେ ସଂଯତ ହୋଇଯାଏ । ମୈଥୁନ ଦେହ ଭାବରେ କାର୍ଯ୍ୟକାରୀ ହୁଏ । ଗୃହସ୍ଥ, ଗୃହସ୍ଥ-ବ୍ରହ୍ମଚାରୀ ରୂପରେ ଅବସ୍ଥାନ କରେ । ମୈଥୁନର ସୂକ୍ଷ୍ମ ତତ୍ତ୍ୱ ବିଚାର କରେ, ସୃଷ୍ଟି, ସ୍ଥିତି ଓ ସଂହାର ଲୀଳା ବୁଝିବାକୁ ସମର୍ଥ ହୁଏ । ଶିବ ଶକ୍ତିର ମିଳନକୁ ଆଦର୍ଶ ରଖି ସାଧନ ପଥରେ ଅଗ୍ରସର ହୁଏ । ନିଦ୍ରା, ଦେବ ନିଦ୍ରା ବା ଯୋଗ ନିଦ୍ରାରେ ପରିଣତ ହୁଏ । ନିଦ୍ରାରେ ଆତ୍ମ ବିସ୍ମୃତ ହୁଏ ନାହିଁ । ଅଳ୍ପ ସମୟ ନିଦ୍ରିତ ହୋଇ ଶରୀରକୁ ସାଧନ ସମର୍ଥ କରେ । ବହୁ ଜନ୍ମ ସଂସ୍କାର ସଂଚିତ ମୃତ୍ୟୁଭୟ ଦୂର ହୋଇଯାଏ । ତେଣୁ ଅମୃତତ୍ତ୍ୱ ଆଡ଼କୁ ଅଗ୍ରସର ହୁଏ ।

ଆଧ୍ୟାତ୍ମିକ ସାଧନ ଜନିତ ଶିକ୍ଷା, ସଭ୍ୟତା ଓ ସଂସ୍କୃତି ସାର୍ବଜନୀନ । ସେହି ଆଧ୍ୟାତ୍ମିକତା ବିଶ୍ୱ ମୈତ୍ରୀ, ବିଶ୍ୱଭ୍ରାତୃ ଭାବରେ ଜାଗ୍ରତ ହୁଏ । ତାହା ସମାଜ ବା ଦେଶ ଭିତରେ ସୀମାବଦ୍ଧ ରହେ ନାହିଁ । ଏକତ୍ୱର ଉପଲବ୍ଧି ଆଧ୍ୟାତ୍ମିକ ସାଧନର ଉଦ୍ଦେଶ୍ୟ । ତେଣୁ ସବୁ ଏକ, ଏହି ଆଦର୍ଶକୁ ସମ୍ମୁଖରେ ରଖି ଅଧ୍ୟାତ୍ମବାଦୀ ସାଧକ ପଥରେ ଅଗ୍ରସର ହୁଏ ଓ ପ୍ରତ୍ୟେକ ଧର୍ମକୁ ସର୍ବ ଧର୍ମ ସମନ୍ୱୟ ଦୃଷ୍ଟିରେ ଦର୍ଶନ ବିଜ୍ଞାନ ପ୍ରତିପାଦିତ ଏକ ରୂପରେ ଦର୍ଶନ କରେ । ଏହି ମନୋବୃତ୍ତିରେ କୌଣସି ଦ୍ୱନ୍ଦ୍ୱ, ଈର୍ଷା ଦ୍ୱେଷ ଇତ୍ୟାଦି ବିଭେଦ ସୃଷ୍ଟିକାରୀ ମନ୍ଦ ଗୁଣ ସବୁ କ୍ଷୀଣ ହୋଇଯାଆନ୍ତି ।

ସମାଜରେ ଗୁଣ କର୍ମ ଅନୁସାରେ ନାନା ଜାତି, ନାନା ଧର୍ମ ଦେଖାଯାଉଥିଲେ ମଧ୍ୟ ସମାଜରୂପୀ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ

ବୋଲି ଏକତ୍ୱ ଆଦର୍ଶରେ ଅଧ୍ୟାତ୍ମବାଦୀ ସେମାନଙ୍କୁ ଦର୍ଶନ କରେ । କୌଣସି ଅଙ୍ଗ ପ୍ରତ୍ୟଙ୍ଗ ଅଭାବରେ ଯେପରି ଶରୀର ବିକଳାଙ୍ଗ ହୁଏ, ସେହିପରି ଅନ୍ୟ ଜାତି ଓ ଧର୍ମର ଅଭାବରେ ସମାଜ ମଧ୍ୟ ବିକଳାଙ୍ଗ ହୋଇଯାଏ । ବହୁକାଳ ପୂର୍ବରୁ ମାନବ-ସମାଜ ବିଭିନ୍ନ ବିଚାର ଓ ଆଚାର ଭିତରେ ଚାଲି ଆସୁଅଛି । ସେଥିପାଇଁ ଦେଶ, କାଳ ଭେଦରେ ବିଭିନ୍ନ ଧର୍ମ, ବିଭିନ୍ନ ସାମ୍ପ୍ରଦାୟିକ-ମତବାଦ ଦେଖା-ଯାଏ । ଏପରିକି ଧର୍ମ ନାମରେ କୌଣସି କୌଣସି ସ୍ଥାନରେ ଯୁଦ୍ଧ ପର୍ଯ୍ୟନ୍ତ ହୋଇଥିବାର ଇତିହାସରୁ ପ୍ରମାଣ ମିଳେ । ମାତ୍ର ଧର୍ମର ସ୍ୱରୂପ ବିଚାର କଲେ ଧର୍ମ ସାର୍ବଜନୀନ ବୋଲି ପ୍ରମାଣିତ ହୁଏ ।

ଧର୍ମ କହିଲେ ଯେ ବିଶ୍ୱକୁ ଧାରଣ କରେ—ଯେ ବ୍ୟକ୍ତି ଠାରୁ ଆରମ୍ଭ କରି ଏହି ଦୃଶ୍ୟମାନ ବ୍ରହ୍ମାଣ୍ଡରେ ପୃଥ୍ୱୀ, ଜଳ, ତେଜ, ବାୟୁ, ଆକାଶ, ବ୍ୟକ୍ତି, ଜାତି, ସମାଜ ନିୟମ ଭିତରେ ଗତି କରୁଅଛନ୍ତି । ଏହି ଗତି ଭିତରେ ପ୍ରତି ମୁହୂର୍ତ୍ତରୁ ଆରମ୍ଭ କରି କଳ୍ପ ପର୍ଯ୍ୟନ୍ତ ସୃଜନ, ପାଳନ ଓ କ୍ରମ ସଂକୋଚର ଲୀଳା ବୃଦ୍ଧି-ଥିଲେହେଁ ପାଳନ, ରକ୍ଷଣ ଉପଯୋଗୀ ସ୍ଥିତି ମଧ୍ୟ ବର୍ତ୍ତମାନ ।

ବ୍ୟାବହାରିକ ଜୀବନରେ ଧର୍ମ—ଯାହା ଧାରଣ ଏବଂ ପାଳନ ଉପଯୋଗୀ ବ୍ୟକ୍ତି ତଥା ସମାଜର ଦୀର୍ଘକାଳସ୍ଥାୟୀ ବିଚାର ଓ ଆଚାର ରୂପ ନିୟମ ଭିତରେ ଗତି କରିବା ପାଇଁ ମହାପୁରୁଷ ମାନେ ନିର୍ଦ୍ଦେଶ କରିଯାଇଅଛନ୍ତି । ଦେଶ ଭେଦରେ ଆଚାରଗତ ପାର୍ଥକ୍ୟ ଦେଖାଯାଏ । ମାତ୍ର ଚିନ୍ତାଧାରା ବା ବିଚାର ଭିତରେ ଏକତ୍ୱ ପ୍ରତିପାଦିତ ସାମଞ୍ଜସ୍ୟ ଅଛି । ଆଚରଣ କାଳକ୍ରମେ ପରିବର୍ତ୍ତନ ହୋଇପାରେ । ମାତ୍ର ବିଚାର ଜନିତ ପ୍ରମାଣୀକୃତ ଦର୍ଶନ ପ୍ରତିପାଦିତ ଚିନ୍ତାଧାରା ଯାହା ଶେଷରେ ଏକତ୍ୱର ପ୍ରତିପାଦନ

କରେ ତାହା ପରିବର୍ତ୍ତନ ହୋଇପାରେ ନାହିଁ । ଯାହା ସତ୍ୟ ତାହା ତ୍ରିକାଳରେ ସବୁ ଦେଶରେ ସତ୍ୟ, ତେଣୁ ନିତ୍ୟ ।

ଅହିଂସା, ସତ୍ୟ, ପରୋପକାରିତା, ତ୍ୟାଗ ମନୋଭାବ ଆଧ୍ୟାତ୍ମିକ ବିଚାର ଓ ଦର୍ଶନ ଜନିତ ଏକତ୍ୱ ପ୍ରତିପାଦିତ ସାର୍ବଜନୀନ ଧର୍ମ । କାରଣ ଏହା ବ୍ୟକ୍ତିଠାରୁ ଆରମ୍ଭ କରି ସମାଜ ତଥା ଜାତି ପର୍ଯ୍ୟନ୍ତ ସାମ୍ୟ ମୈତ୍ରୀ ବନ୍ଧନରେ ସ୍ଥିତିର ସ୍ଥାୟିତ୍ୱକୁ ଦୃଢ଼ୀଭୂତ କରନ୍ତି । ଅବଶ୍ୟ ଏହିସବୁ ଧର୍ମ ବ୍ୟକ୍ତି ବିଶେଷରେ ପ୍ରତିଷ୍ଠା ଲାଭ କରେ । ମାତ୍ର ସେମାନଙ୍କର ଆଚରଣ ସମାଜରେ ଆଦର୍ଶ ହୁଏ । ସମାଜ ତଥା ଜାତି ସମ୍ପୂର୍ଣ୍ଣ ଭାବରେ ଆଚରଣ ନ କରି ପାରିଲେ ମଧ୍ୟ ମନୋବୃତ୍ତିର ପରିବର୍ତ୍ତନ ହୋଇଯାଏ । ତେଣୁ ସମାଜ ଶୃଙ୍ଖଳା ଭିତରେ ଗତି କରେ । ସାର୍ବଜନୀନ ହେତୁ ପାଳନ ନ କରି ପାରିଲେ ମଧ୍ୟ କେହି ଏହା ଅସ୍ୱୀକାର କରିପାରିବେ ନାହିଁ ।

ଅହିଂସା, ହିଂସା, ସତ୍ୟ, ମିଥ୍ୟା, ତ୍ୟାଗ, ଭୋଗ ଇତ୍ୟାଦି ବିପରୀତ ମନୋଭାବ ସମାଜରେ ରହିବ । ମାତ୍ର ଧର୍ମ ମନୋଭାବାପନ୍ନ ଯେତେ ଅଧିକ ହେବେ ସେତେ ସମାଜରେ ସାମ୍ୟ, ମୈତ୍ରୀ ପ୍ରତିଷ୍ଠିତ ହେବ ଏବଂ ଶିକ୍ଷା, ସଭ୍ୟତା, ସଂସ୍କୃତି ଜନିତ ଶାନ୍ତାଧାରାର ଉନ୍ନତି ହେବା ସଙ୍ଗେ ସଙ୍ଗେ ସମାଜ ସର୍ବାଙ୍ଗ ସୁନ୍ଦର ହେବ ।

ଧର୍ମ ମନୁଷ୍ୟର ପଶୁଭାବ ଦୂରୀଭୂତ କରି ମନୁଷ୍ୟତ୍ୱ ପ୍ରଦାନ କରେ ଏବଂ ଦେବତ୍ୱ ଆଡ଼କୁ ଆଗେଇ ନେଇଯାଏ । ଶେଷରେ ମନୁଷ୍ୟକୁ ଦେବ ଭାବରେ ଉଦ୍‌ବୁଦ୍ଧ କରେ ।

ଧର୍ମ ବ୍ୟକ୍ତିଗତ ହେଲେ ମଧ୍ୟ ଏହାର ସାର୍ବଜନୀନ ବ୍ୟାପକତା ଅଛି । ତେଣୁ ଧର୍ମ ପ୍ରତ୍ୟେକ ଜାତିର ଆଦର୍ଶ ଓ ପରିମାପକ ଯନ୍ତ୍ର ।

ବ୍ୟାବହାରିକ ଜୀବନରେ ସମାଜରେ୍ ଚାରି ପ୍ରକାର ଆଚାର ପ୍ରଚଳନ ଦେଖାଯାଏ—ଶାସ୍ତ୍ରାଚାର, ଦେଶାଚାର, ଲୋକାଚାର ଓ କୁଳାଚାର । ତେଣୁ ଏ ସମସ୍ତଙ୍କୁ ଦେଶ କାଳ ଗୁଣରେ ବିଚାର କରି ପାଳନ କରିବାକୁ ହୁଏ । ଲୋକାଚାର ସାମୟିକ ଶାସ୍ତ୍ରାଚାର ଅପେକ୍ଷା ଗରୀୟାନ୍ ହୋଇଥାଏ । ମିତ କହେ-"ଯଦ୍ୟପି ସିଦ୍ଧଂ ଲୋକ ବିରୁଦ୍ଧଂ ନାଦରଣୀୟଂ ନାଚରଣୀୟଂ ।" ମାତ୍ର ଅହିଂସା, ସତ୍ୟ ଓ ତ୍ୟାଗନିଷ୍ଠ ଅଧ୍ୟାତ୍ମ ସାଧନ ଯୁକ୍ତ ବ୍ୟକ୍ତିଭି ସମ୍ପନ୍ନ ସଂସ୍କାରକ, ସମାଜର ଗତିବିଧି କୁ ଦୃଷ୍ଟି ରଖି ପରିଣାମ ବିଚାର ପୂର୍ବକ ଆଚାର ଜନିତ କୁସଂସ୍କାରକୁ ସଂସ୍କାର କରିବାକୁ ସମର୍ଥ ହୋଇପାରନ୍ତି । ସେଥିପାଇଁ ପ୍ରଥମରୁ ସମାଜରେ ଆଦର୍ଶ କର୍ମଯୋଗୀ ହେବା ଉଚିତ । ଶାସ୍ତ୍ରରେ ଅଛି—

"କେବଳଂ ଶାସ୍ତ୍ରମାଶ୍ରିତ୍ୟ ନକର୍ତ୍ତବ୍ୟୋ ବିନିର୍ଣ୍ଣୟଃ ।
ଯୁକ୍ତିହୀନ ବିଚାରେଣ ଧର୍ମହାନିଃ ପ୍ରଜାୟତେ ॥"

ଏଠାରେ ଯୁକ୍ତି କହିଲେ ମନମୁଖୀ ଯୁକ୍ତି ନୁହେଁ । ବରଂ ଶାସ୍ତ୍ରର ବିଧି ନିଷେଧରେ ଦୃଷ୍ଟି ରଖି ଦେଶ, କାଳ ଓ ପାତ୍ର ଗୁଣରେ ପରୀକ୍ଷା କରି ସ୍ୱାର୍ଥ ଓ ସୁବିଧାକୁ ପ୍ରଶ୍ରୟ ନ ଦେଇ ଶୃଙ୍ଖଳା ଏବଂ ସଂଯତ କର୍ମକୁ ପାଳନ କରିବ ଏବଂ ଅନୁମୋଦନ କରିବ । ଗୀତାରେ ଅଛି—

"ଯଃ ଶାସ୍ତ୍ର ବିଧି ମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ ।
ନ ସ ସିଦ୍ଧି ମବାପ୍ନୋତି ନ ସୁଖଂ ନ ପରାଂଗତିମ୍ ॥"

ଯେ ଶାସ୍ତ୍ର ବିଧିକୁ ତ୍ୟାଗ କରି ନିଜ ଇଚ୍ଛାରେ କର୍ମ କରେ,

ଯେ କୌଣସି ସିଦ୍ଧି ଲାଭ କରିପାରେ ନାହିଁ କି ସୁଖ ଶାନ୍ତି ଓ ଶ୍ରେଷ୍ଠ ଗତିକୁ ଲାଭ କରିପାରେ ନାହିଁ ।

ଆଧ୍ୟାତ୍ମିକତା ଆଦର୍ଶରେ ସମାଜରେ ସତ୍ତ୍ୱଗୁଣ ଓ ରଜୋ-ଗୁଣର ପ୍ରାଧାନ୍ୟ ଯେତେ ବେଶୀ ହେବ, ସମାଜ ସେତେ ସର୍ବାଙ୍ଗ ସୁନ୍ଦର ହେବ । ରଜୋଗୁଣ ବିଶୁଦ୍ଧ ରଜୋଗୁଣରେ ପରିଣତ ହେବ । ତେଣୁ ତମୋଗୁଣ ଜନିତ ସ୍ୱେଚ୍ଛାଚାରିତା, ଜଡ଼ତା, ଦୀର୍ଘସୂତ୍ରତା, ଆଳସ୍ୟ, ପରଶ୍ରୀକାତରତା, ପରନିନ୍ଦା, ଈର୍ଷା, ଦ୍ୱେଷ ଇତ୍ୟାଦି ଦୁର୍ଗୁଣ ସମୂହ ସଂକୁଚିତ ହୋଇଯିବ । ବୈଷମ୍ୟ ପ୍ରକୃତିର ନିୟମ ବୈଷମ୍ୟ ଯେ କୌଣସି ଆକାରରେ ରହିବ । ମାତ୍ର ଘୃଣା, ଦ୍ୱେଷ, ଅର୍ଥନୈତିକ ଉତ୍କଟ-ବୈଷମ୍ୟ ସଂକୁଚିତ ହୋଇଯିବ ।

ସତ୍ତ୍ୱଗୁଣ ବା ସାମ୍ୟାବସ୍ଥାପନ୍ନ ନିଷ୍କାମାତ୍ମିକା ବୁଦ୍ଧି କେଉଁଠାରେ ସଂକୁଚିତ ଅବସ୍ଥାରେ, କେଉଁଠାରେ ବିକଶିତ ଅବସ୍ଥାରେ ଅବସ୍ଥାନ କରୁଥାଏ । ଶିକ୍ଷା, ବିଚାର, ସାଧନ, ସତ୍‌ସଙ୍ଗ, ସତ୍‌ଶାସ୍ତ୍ର ଅଧ୍ୟୟନରେ ବୁଦ୍ଧି ବିକାଶ ଲାଭ କଲେ ମନୋବୃତ୍ତି ପରିବର୍ତ୍ତିତ ହୁଏ । ସତ୍ତ୍ୱ ଗୁଣ ବା ସାମ୍ୟାବସ୍ଥାପନ୍ନ ସଂଯତ ମନୋବୃତ୍ତି କେଉଁଠାରେ ଆଦର୍ଶ ଭାବରେ କାହାଠାରେ ପ୍ରତିଷ୍ଠିତ ଆଚରଣ ରୂପରେ ଯେପରି ପ୍ରୟୋଜନ, ସେହିପରି ବିଶୁଦ୍ଧ ରଜୋଗୁଣ ଜନିତ ତେଜ, ବଳ, ବୀର୍ଯ୍ୟ, ସମାଜଗଠନ, ପାଳନ ଓ ରକ୍ଷଣମୂଳକ ଚେଷ୍ଟା ଓ କର୍ମ ତତ୍ପରତା ପ୍ରୟୋଜନ । ତମୋଗୁଣ ଜନିତ ଆଳସ୍ୟ, ଜଡ଼ତା, ମୂଢ଼ତା ଇତ୍ୟାଦି ସତ୍ତ୍ୱ ଗୁଣ ଓ ରଜୋଗୁଣ ଦ୍ୱାରା ଶାସିତ ହୁଏ ।

ସାମ୍ୟାବସ୍ଥା, ନାନା ବୈଷମ୍ୟ ଭିତରେ ବ୍ୟଷ୍ଟିଠାରୁ ଆରମ୍ଭ କରି ସମଷ୍ଟି ପର୍ଯ୍ୟନ୍ତ ସ୍ଥିତିର ସହାୟକ । ବ୍ରହ୍ମାଣ୍ଡର ପ୍ରତ୍ୟେକ ପଦାର୍ଥ ପ୍ରାକୃତିକ ବୈଷମ୍ୟ ଭିତରେ ପ୍ରାକୃତିକ ସାମ୍ୟାବସ୍ଥା ଯୋଗୁଁ

ନିର୍ଦ୍ଦିଷ୍ଟ ଭାବରେ ଗଣତର ସଜ୍ଜିତ ସ୍ଥିତି କରିବା ପ୍ରତିଷ୍ଠିତ ହୋଇଅଛି । ମାତ୍ର ବ୍ୟକ୍ତି ଓ ସମାଜର ସଂକଳ୍ପ ବିକଳ୍ପାତ୍ମକ ମନର ପ୍ରଭାବ ଅତ୍ୟନ୍ତ ବେଶୀ । ସେଥିପାଇଁ ବ୍ୟଷ୍ଟି ମନର ଧର୍ମ ମାନବ ଠାରେ ପ୍ରଭାବ ବିସ୍ତାର କରିଥିବାରୁ ମନୁଷ୍ୟ, ମାନବ, ମନୁଜ ଇତ୍ୟାଦିରେ ନାମିତ ହୋଇଅଛି । ତେଣୁ ଏହି ବ୍ୟଷ୍ଟି ମନକୁ ଉପେକ୍ଷା କରାଯାଇ ପାରିବ ନାହିଁ । କିନ୍ତୁ ଏହାକୁ ସାମ୍ୟାବସ୍ଥା ଦ୍ୱାରା ଯେତିକି ସଂଯତ ଭାବରେ ସଂକୁଚିତ ଅବସ୍ଥାରେ ପରିଗୃହୀତ କରାଯିବ, ସେତିକି ବ୍ୟକ୍ତିଗତ ସ୍ଥିତି ସୁଖକର, ଆନନ୍ଦମୟ ହେବ ଏବଂ ଦୀର୍ଘାୟୁ ହେବ । ସମାଜରେ ଗଠନ, ପାଳନ ଓ ଏକତ୍ୱ ମନୋବୃତ୍ତି ବୃଦ୍ଧି ପାଇବ । ପରିଶ୍ରମ, ସ୍ୱାର୍ଥ ରହିତ କର୍ତ୍ତବ୍ୟ ରୂପ ଶ୍ରମ ଦାନରେ ପରିଣତ ହେବ । ଅହଂକାର ପରିବର୍ତ୍ତେ ସ୍ୱାର୍ଥପରତା ଓ ଶୋଷଣ ରହିତ ମନୋବୃତ୍ତି ବୃଦ୍ଧି ପାଇବ ।

ପ୍ରଥମ କଥା ବ୍ୟକ୍ତି ବିଶେଷରେ ମନକୁ ଏକାଗ୍ର ଏବଂ ବହିର୍ମୁଖୀ କରିବାକୁ ହେବ । ସାଧାରଣତଃ ବୁଦ୍ଧି ଅପେକ୍ଷା ମନର ପ୍ରବଳତା ଦେଖାଯାଇଥାଏ । କାରଣ ସାଧାରଣ ମନୁଷ୍ୟ ଶବ୍ଦ, ସ୍ପର୍ଶ, ରୂପ, ରସ ଗନ୍ଧ ଜନିତ ବିଷୟ ଭୋଗ୍ୟ ବସ୍ତୁ ଦ୍ୱାରା ହଠାତ୍ କ୍ଷଣିକ ସୁଖ ଓ ଆନନ୍ଦ ଅନୁଭବ କରିଥାଏ । ପରିଣାମରେ ଶତ ଗୁଣ ଦୁଃଖ ଆସିବ ବୋଲି ଜାଣି ସୁଦ୍ଧା ଉନ୍ମାଦନାବଶତଃ ବାଳକବତ୍ ଆଚରଣ କରିଥାଏ ।

ବିଷୟ ଭୋଗ୍ୟ ବସ୍ତୁସମୂହ ଉପେକ୍ଷା କରାଯାଇ ପାରିବ ନାହିଁ କି ମନକୁ ଉପେକ୍ଷା କରାଯାଇ ପାରିବ ନାହିଁ । ମାତ୍ର ଏହାକୁ ପରିଣାମ ବିଚାର ସମ୍ପନ୍ନ ବୁଦ୍ଧି ଦ୍ୱାରା ପଶୁ ଭାବରେ ଭୋଗ ନ

କରି ମନୁଷ୍ୟ ଭାବରେ ଭୋଗ କଲେ ଶରୀର ଓ ବୁଦ୍ଧି ଅବସନ୍ନ ହୁଏ ନାହିଁ ।

ଏପରି ଅବସ୍ଥା ଆସିଲେ ସତ୍‌ସଙ୍ଗ ଓ ସତ୍‌ଶାସ୍ତ୍ର ଅଧ୍ୟୟନରେ ସ୍ୱତଃ ଦେବଭାବ ଓ ଆତ୍ମୋନ୍ନତ ଆଡ଼କୁ ମନ ଅଗ୍ରସର ହୁଏ । ଏଥି-ପାଇଁ ସାଧନର ପ୍ରୟୋଜନ । ପ୍ରଥମେ ବାଧ୍ୟ ନିର୍ଦ୍ଦେଶରେ ତ୍ୟାଗ ମନୋଭାବ, ଅହିଂସା, ସତ୍ୟ, ବ୍ରହ୍ମଚର୍ଯ୍ୟ, କାୟ-ମନୋବାକ୍ୟରେ ପାଳନ କରିବା ସଙ୍ଗେ ସଙ୍ଗେ ଶରୀର, ଗ୍ରୀବା ଏବଂ ଶିରକୁ ସମାନ ଭାବରେ ରଖି ଏକାସୀନ ହୋଇ ସାମାନ୍ୟ ଭାବରେ ପ୍ରାଣାୟାମ ସାଧନ ପୂର୍ବକ ବ୍ରହ୍ମାଣ୍ଡର ଆତ୍ମ ଅନାତ୍ମ ପଦାର୍ଥର ବିଚାର କରିବ । ସାମୟିକ ଏକାଗ୍ର ଚିତ୍ତରେ ଆତ୍ମାରେ ଧ୍ୟାନସ୍ଥ ହେବାକୁ ଯତ୍ନ କରିବ । କେତେଗୁଡ଼ିଏ ଆଧ୍ୟାତ୍ମିକ ଗ୍ରନ୍ଥର ବିଷୟବସ୍ତୁ ଜାଣିବା ପାଇଁ ସତ୍‌ସଙ୍ଗ ଏବଂ ସତ୍‌ଶାସ୍ତ୍ର ଅଧ୍ୟୟନ କରି ଜ୍ଞାନ ଭଣ୍ଡାରରେ ସଂଚୟ କରିବ । ମନ ଯେତେବେଳେ ଆତ୍ମାରେ ଏକାଗ୍ର ନ ହୋଇ ଅନ୍ୟଆଡ଼େ ଚଞ୍ଚଳ ହେବ, ସେତେବେଳେ ଆଧ୍ୟାତ୍ମିକ ଜଗତର ଚିନ୍ତାଧାରାରେ ତଦ୍‌ଗତ ରହିବ; ମନ ଯେପରି ଅନାତ୍ମ ପଦାର୍ଥ ଆଡ଼କୁ ଖସି ନ ଯାଏ । ଏହି କ୍ଷୁଦ୍ର ବ୍ରହ୍ମାଣ୍ଡ (ଶରୀର) ବା ବୃହତ୍ ବ୍ରହ୍ମାଣ୍ଡର ପଚିଶି ତତ୍ତ୍ୱ ଭିତରେ ବିଚାର କରିବାରେ ବ୍ୟସ୍ତ ରହିବ । ତାପରେ ଆସ୍ତେ ଆସ୍ତେ ମନ ଏକାଗ୍ର ହିସାବରେ ଅଗ୍ରସର ହୁଏ ଓ ଧ୍ୟାନାବସ୍ଥାର ଘନତା ଲାଭ କରି ସାମୟିକ ଆତ୍ମସ୍ଥ ହୋଇଯାଏ । ସାମାନ୍ୟ କେତେ ମିନିଟ୍ ପାଇଁ ଆତ୍ମସ୍ଥ ହେଲେ ଚିନ୍ତାଧାରା ମାର୍ଜିତ ହୋଇଯାଏ । ଯେତେବେଳେ ସାଧାରଣ ଅବସ୍ଥାରେ ରହେ ମାତ-ଗତ, ନ୍ୟାୟଗତ ଓ ଧର୍ମଗତ ବିଚାରରେ ସାମାଜିକ ଜୀବନ ଯାପନ କରେ । ବ୍ୟକ୍ତି ପ୍ରତ୍ୟେକ ବିଷୟବସ୍ତୁର ଆତ୍ମା ରୂପକ ମାପ-କାଠିରେ ସୁଖ, ଦୁଃଖ, ଆନନ୍ଦ, ନିରାନନ୍ଦ, ଜ୍ଞାନ, ଅଜ୍ଞାନ ବିଚାର

କର ସାକ୍ଷୀ ରୂପରେ ସଦାନନ୍ଦରେ ବିଚରଣ କରେ ଏବଂ ତଦନୁ-ଯାୟୀ କାୟିକ, ବାଚକ, ମାନସିକ କର୍ମ ଆଚରଣ କରେ । ସଦା ସ୍ଥିର ସ୍ୱଭାବରେ ପରିଣତ ହୋଇଯାଏ । ସମାଜର ସେବା କରିବା ପ୍ରବୃତ୍ତି ବଳବତ୍ତର ହୁଏ । ନାନା ଦୁଃଖ କ୍ଲେଶ ଭିତରେ ଶରୀର ସୁଖ, ଦୁଃଖ, ଶୀତ, ଉଷ୍ଣ, ସହନ ଉପଯୋଗୀ ସୁଦୃଢ଼ ଓ ବଳିଷ୍ଠ ହୁଏ । ନାନା ଝଡ଼ ଝଞ୍ଜା ଭିତରେ ଅସୀମ, ଧୀର, ଶାନ୍ତ ଓ ଗମ୍ଭୀର ଭାବରେ ଅବସ୍ଥାନ କରେ । ପ୍ରତ୍ୟେକ ପଦାର୍ଥ ଭିତରେ ଏବଂ ବାହାରେ ସତ୍ୟ, ଶିବ, ସୁନ୍ଦର ରୂପ ଆତ୍ମାର ଦର୍ଶନ କରେ । ଭାବ-ପ୍ରବଣତା ବା ରୁକ୍ଷ ଭାବ ପ୍ରକାଶ ପାଏ ନାହିଁ । ସଦା ପ୍ରେମ ଭାବ ବିଜଡ଼ିତ କରେ । ସାମାଜିକ କର୍ମ ଆଚରଣ ଭିତରେ ଚିନ୍ତାଧାରା ଆଧ୍ୟାତ୍ମିକ ରାଜ୍ୟରେ ବିଚରଣ କରୁଥାଏ । ତାର ଆନନ୍ଦ ସମସ୍ତେ କିପରି ଲାଭ କରନ୍ତୁ ଏଥିପାଇଁ ବ୍ୟାକୁଳ ହୁଏ ଏବଂ ସେଥିପାଇଁ ପ୍ରବର୍ତ୍ତକ ହୁଏ । ନିତ୍ୟ ଅନିତ୍ୟ ବିଚାର ଦ୍ୱାରା ନିତ୍ୟ ପଦାର୍ଥରେ ସ୍ଥିର ବୁଦ୍ଧି ପ୍ରତିଷ୍ଠା ଲାଭ କରେ । ତେଣୁ ଯାହା କରେ କର୍ତ୍ତବ୍ୟ-ବୋଧରେ କରେ । ଫଳ ଆଶା କ୍ଷୀଣ ହୋଇଯାଏ । କର୍ମରେ ସନ୍ତୁଷ୍ଟ ହୋଇପାରେ ନାହିଁ, ମାତ୍ର କର୍ମ ବନ୍ଧନମୁକ୍ତରେ ଜୀବନ ଯାପନରେ ସନ୍ତୋଷ ଲାଭ କରେ । ବ୍ୟାବହାରିକ ଜୀବନରେ ପ୍ରେମ ଜନିତ ସାମ୍ୟ, ମୈତ୍ରୀ ଭାବରେ ଉତ୍ଫୁଲ୍ଲ ଏବଂ ଆନନ୍ଦିତ ହେଉଥାଏ । ଧର୍ମ, ଅଧର୍ମ, ଜ୍ଞାନ, ଅଜ୍ଞାନ, ବୈରାଗ୍ୟ, ଅବୈରାଗ୍ୟ, ଐଶ୍ୱର୍ଯ୍ୟ, ଅନୈଶ୍ୱର୍ଯ୍ୟ ଭିତରେ ଉଦାସୀନତା ଅବଲମ୍ବନ କରେ । ଏହା ପ୍ରକୃତିଜନ୍ୟ ବୋଲି ସତ୍ୟ, ଶିବ, ସୁନ୍ଦରଙ୍କୁ ଅର୍ପଣ କରେ । କାମନା, ଲୋକ କଲ୍ୟାଣେ-ଷଣାରେ ପରିଣତ ହୁଏ । କ୍ରୋଧ ଲିଭିଯାଏ, ମାତ୍ର ଶରୀର ଥିବାରୁ ଦାଗ ରହିଯାଏ । ଲୋଭ ଅତ୍ୟନ୍ତ ସଂକୁଚିତ ହୋଇଯାଏ । ଆତ୍ମ ପଦାର୍ଥ ବିଚାର ଜନିତ ପ୍ରଭାବରେ ଜ୍ଞାନେନ୍ଦ୍ରିୟ ମାନଙ୍କର ବାହ୍ୟ

ବାହ୍ୟପୂରେ ଆଦାନ ପ୍ରଦାନ ରୂପ ସ୍ୱଭାବ ପରିବର୍ତ୍ତନ ହୋଇଯାଏ । ତେଣୁ ସେ ସଦାନନ୍ଦୀ ଭାବରେ ଅବସ୍ଥାନ କରେ । ସାମୟିକ ବିକ୍ଷେପ ଆସେ, ମାତ୍ର ସେହି ମୁହୂର୍ତ୍ତରେ ସ୍ପର୍ଶ କରି ଚାଲିଯାଏ । ତ୍ୟାଗ ଭାବ ଆପେ ଆପେ ଆସିଯାଏ । ଜୀବନ ଧାରଣ ଉପଯୋଗୀ ଦ୍ରବ୍ୟ ବାହାରେ ସିବାକୁ ଇଚ୍ଛା କରେ ନାହିଁ । ଜୀବନ ଧାରଣ ମାନର ସୀମା କେଉଁ ପର୍ଯ୍ୟନ୍ତ ସେ ଠିକ୍ ଠିକ୍ ବୁଝେ । କାରଣ ସନ୍ତୋଷ ପ୍ରତିଷ୍ଠା ଲାଭ କରିଥାଏ । ମାତ୍ର କର୍ମରେ ସନ୍ତୁଷ୍ଟ ହୋଇ ପାରେ ନାହିଁ କିନ୍ତୁ କର୍ମ ନ କରି ରହିପାରେ ନାହିଁ ।

ଆଧ୍ୟାତ୍ମିକ ସାଧନ ଜନିତ ଆନନ୍ଦ ଉପଲବ୍ଧି ହେଲେ ନିମ୍ନତର ଆନନ୍ଦ, ଯାହା କ୍ଷଣିକ ଏବଂ ପରିଣାମରେ କାଯୃିକ, ମାନସିକ ଦୁଃଖଦାୟକ, ତାହାଆଡ଼କୁ ଆଉ ଦୃଷ୍ଟି କରିବାର ଅବକାଶ ନ ଥାଏ । ସମସ୍ତେ ଆନନ୍ଦ ଇଚ୍ଛା କରନ୍ତି, ମାତ୍ର ଯେତେ-ବେଳେ ଅପେକ୍ଷାକୃତ ଅଧିକ ଆନନ୍ଦ ଲାଭ ହୁଏ, ସେତେବେଳେ ନିମ୍ନତର ଆନନ୍ଦ ଆଡ଼କୁ ଆଉ ଦୃଷ୍ଟି ଯାଏ ନାହିଁ । ଏହା ସ୍ୱଭାବ-ସିଦ୍ଧ ।

ଭାରତୀୟ ଶିକ୍ଷା, ସଭ୍ୟତା ଓ ସଂସ୍କୃତି କହିଲେ ରୀତି, ନୀତି, ଆଚାର, ବ୍ୟବହାର; ଶାରୀରିକ, ମାନସିକ, ବୌଦ୍ଧିକ ସବୁ ଦିଗରୁ କର୍ମ ଓ ଚିନ୍ତାଧାରା ଆଡ଼କୁ ଦୃଷ୍ଟି କରିବାକୁ ହେବ । ଶାରୀରିକ ସ୍ୱାସ୍ଥ୍ୟ ଧର୍ମ ଦୃଷ୍ଟିରୁ ଆମର ଏହି ଗ୍ରୀଷ୍ମ ପ୍ରଧାନ ଦେଶରେ ସ୍ନାନ, ଶୌଚ, ବସ୍ତ୍ର, ଉତ୍ତରୀୟ ସାଧାରଣ ଅଙ୍ଗାବରଣ, ଅନୁତ୍ତେଜକ ଭାତ ରୁଟି, ଡ଼ାଲି, ତରକାରୀ, ଦୁଧ, ଘିଅ ଇତ୍ୟାଦି ଆହାର, ଯାହା ଏହି ଶରୀର ବା ସାଧନ କ୍ଷେତ୍ରର ରକ୍ଷା ଉପଯୋଗୀ ଏବଂ ସାଧନ ଓ ବିଚାରର ଅନୁକୂଳ, ତାହା ଭାରତୀୟ ଶାରୀରିକ ସଂସ୍କୃତି । ଦେଶର

ଜଳବାୟୁ ଅନୁକୂଳ ଦୃଷ୍ଟିରୁ ଏହା ସୀମାବଦ୍ଧ । ମାତ୍ର ଆଧ୍ୟାତ୍ମିକ ସାଧନ ବସ୍ତୁର ଜନକ ଚିନ୍ତାଧାରାକୁ ମୁଖ୍ୟ କରି ତାର ଆଦର୍ଶରେ ଶିଳ୍ପ, ସ୍ଥାପତ୍ୟ, ଚିକିତ୍ସା ଜ୍ଞାନ, ବିଜ୍ଞାନ, ଧର୍ମ, ଦର୍ଶନ, ସଙ୍ଗୀତ ସାହିତ୍ୟ, ପୁରାଣ, ଉପନିଷଦ, ଧର୍ମନୀତି, ରାଜନୀତି, ଅର୍ଥନୀତି, ସମାଜନୀତି, ପରିବାରନୀତି ଏବଂ ବ୍ୟକ୍ତିନୀତି ଇତ୍ୟାଦି ପାରମ୍ପରିକ ସାର୍ବଜନୀନ ଭାରତୀୟ ସଂସ୍କୃତି ଏତେ ବ୍ୟାପକ ଯେ ପୃଥିବୀର କୌଣସି ବୁଦ୍ଧିମାନ ଲୋକ ଏହା ଅସ୍ୱୀକାର କରିପାରିବେ ନାହିଁ । କାରଣ ଏ ସବୁ ଭିତରେ ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀ ଅଛି ।

ଭାରତୀୟ ସଂସ୍କୃତି କହିଲେ ଆଧ୍ୟାତ୍ମିକ ସାଧନ ବସ୍ତୁର ଜନକ ମାର୍ଜିତ ଚିନ୍ତାଧାରା ସର୍ବାଗ୍ରେ

"ମନୁଷ୍ୟାଃ ଭ୍ରାତରଃ ସର୍ବେ ସ୍ୱଦେଶଂ ଭୁବନତ୍ରୟମ୍ ।"

(ବସୁଧୈବ କୁଟୁମ୍ବକଂ) ଏହି ମନୋଭାବ ଜାଗ୍ରତ ହୁଏ । ଏହାକୁ ସାର୍ବଜନୀନ ବର୍ଣ୍ଣନ ପ୍ରତିପାଦିତ ଧର୍ମ କହନ୍ତି, ଯାହା ନିତ୍ୟ ସର୍ବବ୍ୟାପୀ ଈଶ୍ୱରଙ୍କର ଅନୁସନ୍ଧାନ କରେ । ଆମେ ଏହାକୁ ଯେତେ ଜାଣିବା ସେତେ ଆମର ଚିନ୍ତାଧାରା ବ୍ୟାପକ ହେବ ।

ଈଶ୍ୱରଙ୍କର ଅନୁସନ୍ଧାନ କରିବା ସାର୍ବଜନୀନ ବିଶୁଦ୍ଧ-ଧର୍ମ । ଅନୁସନ୍ଧାନ ନ କରି ମନୁଷ୍ୟ ରହି ପାରେ ନାହିଁ । ଉପନିଷଦ କହେ—'ସାଂଖ୍ୟ ଯୋଗାଧିଗମ୍ୟଂ ।' ଈଶ୍ୱରଙ୍କୁ ସାଂଖ୍ୟ ଏବଂ ଯୋଗଦ୍ୱାରା ଉପଲବ୍ଧି କରାଯାଏ । ଶଙ୍କର ବ୍ୟାଖ୍ୟା କଲେ—ବସ୍ତୁ ତତ୍ତ୍ୱ ବିଚାରଣଂ ଏବଂ ଚିତ୍ତ ସମାଧାନ ରୂପଂ ସାଧନଂ । Metaphysical-discussion and Concentration of mind. ପ୍ରତ୍ୟେକ ପଦାର୍ଥର ତତ୍ତ୍ୱ ବା

ସୂକ୍ଷ୍ମ ବିଚାର, ଯାହାଦ୍ୱାରା ଉପାସନା, ଧ୍ୟାନ ଓ ଏକତ୍ୱର ଅନୁସନ୍ଧାନରେ ଏବଂ ଭଗବତତ୍ତ୍ୱ ବିଷୟରେ ଜାଣିବା ଇଚ୍ଛା ବଳବତ୍ତର ହୁଏ । ବେଦ କହେ—"ବା ରେ ! ଆତ୍ମା ଶ୍ରୋତବ୍ୟଃ, ଅଧ୍ୟେତବ୍ୟଃ ମନ୍ତବ୍ୟଃ, ନିଧିଧ୍ୟାସିତବ୍ୟଃ ।" ଆତ୍ମା ବିଷୟରେ ଶୁଣ ଏବଂ ପଢ଼, ପଢ଼ି ମନନ ବା ବିଚାର କର, ବିଚାର କରି ଯେଉଁ ଏକତ୍ୱର ପ୍ରତିପାଦନ ହେଲା ତା'ପରେ ନିଷ୍ଠା ରଖି କାୟ-ମନୋବାକ୍ୟରେ ଆଚରଣ କର ।

ଚିତ୍ତ ସମାଧାନ ରୂପ ସାଧନ କହିଲେ କର୍ମଯୋଗ ଅର୍ଥାତ୍ କାମନା ରହିତ କର୍ମ, ଈଶ୍ୱରଙ୍କ ଉପରେ ଦୃଢ଼ ଭକ୍ତି ବିଶ୍ୱାସ ରଖି କର୍ତ୍ତବ୍ୟ ସାଧନ କରିବା । ଈଶ୍ୱର ଆମର କାମ୍ୟ, ଧ୍ୟେୟ ଓ ଆଦର୍ଶ । ତାଙ୍କର ଉପଲବ୍ଧି ପାଇଁ କାମନା । ସେଥିପାଇଁ ତାଙ୍କ ଠାରେ ଧ୍ୟାନ ରଖି ତାଙ୍କର ଆଦର୍ଶରେ କର୍ମ କରିବାକୁ କର୍ମଯୋଗ କହନ୍ତି । ଈଶ୍ୱର ଯୋଗୀଶ୍ୱର । ତେଣୁ ଯୋଗୀଙ୍କର ସାମାନ୍ୟ, ଆସନ ଓ ପ୍ରାଣାୟମ ସାଧନ ପୂର୍ବକ ନିଜ ନିଜର କର୍ତ୍ତବ୍ୟ କର୍ମ ସମ୍ପାଦନ କଲେ ଚିତ୍ତର ଏକାଗ୍ରତା କ୍ରମେ ବୃଦ୍ଧି ପାଏ ଏବଂ ସମାଜରେ ବହୁଜନର ସୁଖ, ବହୁଜନର ହିତ ଏବଂ ମନୋଭାବ ଉତ୍କର୍ଷ ଲାଭ କରେ । ସେଥିପାଇଁ ଗୀତା କହିଛି 'ଯୋଗଃ କର୍ମସୁ କୌଶଳଂ ।' ଅର୍ଥାତ୍ ଈଶ୍ୱରଙ୍କୁ କାମ୍ୟ କରି କର୍ମ କଲେ କର୍ମ ବନ୍ଧନ ଲାଗେ ନାହିଁ । କାରଣ ତାର କାମନାରେ ନିଃସ୍ୱାର୍ଥପରତା ଏବଂ ତ୍ୟାଗ ଭାବ ପ୍ରକାଶ ପାଏ ।

•

ସେଥିପାଇଁ ପ୍ରଥମରୁ ଈଶ୍ୱରଙ୍କ ଉପରେ ଦୃଢ଼ ବିଶ୍ୱାସ ରଖି ତାଙ୍କର ଅନୁସନ୍ଧାନ ପାଇଁ ଧର୍ମଶାସ୍ତ୍ର ଜାଣି କାୟ-ମନୋବାକ୍ୟରେ ଆଚରଣ କରିବାକୁ ଧର୍ମ କହନ୍ତି । ସମାଜରେ ରହି ସାମାଜିକ

ଜୀବନଯାପନ ପାଇଁ ନିଜର ନିଜ ପରିବାରର ଜୀବନର ଭରଣ ପୋଷଣ ପାଇଁ ଯେ ଯାହା ବ୍ୟବସାୟ କରି ମଧ୍ୟ ଈଶ୍ୱରଙ୍କ ଉପରେ, ଦୃଢ଼ ଭକ୍ତି ଓ ବିଶ୍ୱାସ ରଖି ତାଙ୍କର ଅନୁସନ୍ଧାନ ମନୋବୃତ୍ତି ଜାଗ୍ରତ ହେଲେ ଅବଶ୍ୟ ପ୍ରତ୍ୟହ ନିୟମିତ ରୂପରେ ଅଳ୍ପ ସମୟ ହେଲେ ମଧ୍ୟ ନିଜକୁ ନିୟୋଜିତ କରିପାରିବ । "ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋଭୟାତ୍ ।" ଅଳ୍ପ ସମୟ ପାଇଁ ଆଚରଣ କଲେ ମଧ୍ୟ ମହାନ୍ ଭୟରୁ, ବିପଦରୁ, ପ୍ରମାଦରୁ ରକ୍ଷା ମିଳେ ।

ଆଜି କାଲି ସୁଦ୍ଧା କିଏ ଭାଗବତ, କିଏ ଗୀତା, କିଏ ମୂର୍ତ୍ତି ପୂଜା ଓ ଉପାସନା ଏବଂ ନାନାଦି ପୁରାଣ ପାଠ, ବ୍ରତ, ଉପବାସ ଇତ୍ୟାଦି ଆଚରଣ କରୁଥିବା ଦେଖାଯାଏ । ଏଥିରେ କୌଣସି ଅର୍ଥ ବା କ୍ଷମତାଲିପ୍ସା ବା କାମନା ନ ଥିଲେ ଏହା ନିଷ୍କାମ କର୍ମ । ନିୟମିତ ରୂପରେ ଅଳ୍ପ ସମୟ ପାଇଁ ଆଚରଣ କରୁଥିଲେ ଚିତ୍ତ ଶୁଦ୍ଧି ଜନିତ ଭାବନା ମାର୍ଜିତ ହେବା ସଙ୍ଗେ ସଙ୍ଗେ ଭଗବତ୍ ଭକ୍ତି ଓ ବିଶ୍ୱାସରେ ଦୃଢ଼ତା ଏବଂ ନିଷ୍ଠା ଲାଭ ହୁଏ ।

ପୁରାଣ ମାନଙ୍କରୁ ଭାରତୀୟ ଶିକ୍ଷା, ସଭ୍ୟତା ଓ ସଂସ୍କୃତି-ଗତ ବହୁ ଜ୍ଞାନ ଲାଭ ହେବା ସଙ୍ଗେ ସଙ୍ଗେ ଶବ୍ଦ, ସାହିତ୍ୟ, ଧର୍ମନୀତି ରାଜନୀତି, ସମାଜନୀତି ଇତ୍ୟାଦିରେ ବ୍ୟୁତ୍ପତ୍ତି ଲାଭ ହୁଏ ଏବଂ ଈଶ୍ୱର ବିଶ୍ୱାସ ବୃଦ୍ଧି ପାଏ ।

ଭଗବାନ୍, ଭଗବତ୍ ଜ୍ଞାନରେ ଏବଂ ବିଶ୍ୱାସରେ ମୂର୍ତ୍ତି ପୂଜା କଲେ ବହୁ ପ୍ରେରଣା ଲାଭ ହୁଏ । ମୂର୍ତ୍ତି ପୂଜା ଓ ଉପାସନାରେ ଉପଚାର ଦେଲାବେଳେ ପୃଥିବୀର ସମସ୍ତ ଭୋଗ୍ୟ ବସ୍ତୁ ଅର୍ପଣ କରୁଛି ବୋଲି ସାଧକ ବା ପୂଜକ ମନେକରେ । ଅର୍ଘ୍ୟ,

ଗନ୍ଧ, ପୁଷ୍ପ, ଧୂପ, ଦୀପ ଓ ନୈବେଦ୍ୟ ଭିତରେ ପଞ୍ଚ ଜ୍ଞାନେନ୍ଦ୍ରିୟ-ଭୋଗ୍ୟ ପଦାର୍ଥ ସବୁ ଅର୍ପଣ କରୁଛ । ମୋର କିଛି ପ୍ରୟୋଜନ ନାହିଁ । ତା'ପରେ କିଛିଦିନ ଏହିପରି ନିର୍ଦ୍ଦିଷ୍ଟ ଭାବରେ ନିୟମିତ ଭାବରେ ପୂଜା ଉପାସନା କଲେ ସେହି ମୂର୍ତ୍ତିଠାରୁ ପ୍ରେରଣା ପାଇବ । ତୁମ ଦର୍ଶନେନ୍ଦ୍ରିୟ ଉତ୍ତେଜିତ ହେଲେ, ଇତସ୍ତତଃ ହେଲେ, ଚିତ୍ତ ଚଞ୍ଚଳ ନ କରି ମୋର ରୂପ ଦର୍ଶନରେ ତୃପ୍ତି ଏବଂ ଆନନ୍ଦ ଲାଭ କର । ଘ୍ରାଣେନ୍ଦ୍ରିୟ ଉତ୍ତେଜିତ ହେଲେ ମୋତେ ଅର୍ପଣ କରୁଥିବା ଗନ୍ଧ, ପୁଷ୍ପ, ଧୂପ, ଦୀପରେ ସନ୍ତୋଷ ଲାଭ କର । ରସନେନ୍ଦ୍ରିୟ ଉତ୍ତେଜିତ ହେଲେ ମୋତେ ଦେଉଥିବା ନୈବେଦ୍ୟ ଖାଇ ସନ୍ତୋଷ ଲାଭ କର । ଶ୍ରବଣେନ୍ଦ୍ରିୟ ଉତ୍ତେଜିତ ହେଲେ ଘଣ୍ଟି, ଘଣ୍ଟା, ଶଙ୍ଖ ଶବ୍ଦ ଶୁଣି ସନ୍ତୋଷ ଲାଭ କର । ତା'ପରେ ଆପେ ଆପେ ଜ୍ଞାନେନ୍ଦ୍ରିୟ ସଂଯତ ହୋଇଯିବ, ମନ ଏକାଗ୍ର ହୋଇଯିବ, ଚିନ୍ତାଧାରା ମାର୍ଜିତ ହୋଇଯିବ । ଅନ୍ତତଃ ଅଧ ଘଣ୍ଟାଏ ପାଇଁ ସମୟ ଦେଲେ ବହୁ ପ୍ରେରଣା ତାଙ୍କ ଠାରୁ ମିଳିବ । ତାପରେ ଯାହା ଚର୍ଚ୍ଚା କର, ଯାହା ଶିଖିବାକୁ ଇଚ୍ଛା କର, ଯାହା ଜାଣିବାକୁ ଇଚ୍ଛା କର, ସେଥିରେ ଏକାଗ୍ରତା ଆସିବା ସଙ୍ଗେ ସଙ୍ଗେ ଅନେକ ନୂଆ ନୂଆ ପ୍ରେରଣା ମିଳିବ । ତେଣୁ ମୂର୍ତ୍ତି ପୂଜାରେ ମଧ୍ୟ ସତ୍ୟତା ଅଛି । ଏହିପରି ସଚ୍ଚିଦାନନ୍ଦ ରୂପ ଈଶ୍ୱରଙ୍କର ଉପଲବ୍ଧି ପାଇଁ ଧର୍ମାଚରଣର ବ୍ୟବସ୍ଥା ଅଛି । ଆଧ୍ୟାତ୍ମିକତା ସମାଜରେ ଯେ କୌଣସି ପ୍ରକାରରେ ଯେତେ ବ୍ୟାପକ ହେବ, ସେତେ ସମାଜ ସର୍ବାଙ୍ଗ ସୁନ୍ଦର ହେବ, ବହୁମୁଖୀ ଉନ୍ନତି ଲାଭ କରିବ ଏବଂ ସୁଖ ସମୃଦ୍ଧି ବୃଦ୍ଧି ପାଇବ । ସମାଜରେ ସାମ୍ୟ, ମୈତ୍ରୀ ଜନିତ ସାମାଜିକ ନ୍ୟାୟ ପ୍ରତିଷ୍ଠା ଲାଭ କରିବ ।

ରାଜନୀତି, ଅର୍ଥନୀତି, ସମାଜନୀତିର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ତେବେ ବର୍ତ୍ତମାନ ଯେଉଁ ଗଣତାନ୍ତ୍ରିକ ସମାଜବାଦ ରୂପକ ରାଜନୀତିର ପ୍ରଚଳନ ଅଛି, ଏହାର ମୌଳିକତା ଏବଂ ବିଶୁଦ୍ଧ ଦିଗରୁ ବିଚାର କଲେ ଏଥିରେ ଜାତୀୟତା ଅଛି, ପାରମ୍ପର୍ଯ୍ୟ ଅଛି । ପରମ୍ପରା ଜନିତ ଶିକ୍ଷା, ସଭ୍ୟତା ଓ ସଂସ୍କୃତି, ରକ୍ଷଣ, ମାର୍ଜନ, ସଂସ୍କାର ଓ ନୈତିକତାର ଉନ୍ନତି ସାଧନର ଦୃଷ୍ଟିଭଙ୍ଗୀ ଅଛି । ଜାତିର ନିଜତ୍ୱ, ବିଶେଷତ୍ୱ ଆଧ୍ୟାତ୍ମିକତାର ସ୍ୱୀକୃତି ଏବଂ ମାନ୍ୟ ଅଛି । ଆଧ୍ୟାତ୍ମିକତା ଜନିତ ଏକତ୍ୱ ପ୍ରତିପାଦିତ ଜାତୀୟତାର ରକ୍ଷଣାବେକ୍ଷଣ ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ଦୃଷ୍ଟି ଅଛି, ବ୍ୟକ୍ତିଗତ ଦଳଗତ ସ୍ୱାଧୀନତା ଅଛି । ଯେ ଯାହା ସେ ତାହା ସ୍ଥାନରେ ଗରିୟାନ୍-ଏହି ମନୋଭାବର କାର୍ଯ୍ୟକାରିତା ଅଛି । ମାତ୍ର ଏ ଜାତିର ପ୍ରାଣ ଆଧ୍ୟାତ୍ମିକତାର ପ୍ରବୃତ୍ତିର ଅଭାବରୁ ଭୋଗଲିପ୍ସା, କ୍ଷମତା-ଲିପ୍ସା, ଧନଲିପ୍ସା ଜନିତ ଦୁର୍ନୀତି ଏତେ ବ୍ୟାପକ ଏବଂ ପ୍ରବଳ ହୋଇଅଛି ଯେ, ଯେପରି ମନେହୁଏ, ଯଦି ଏହାର କିଛି ସଂସ୍କାର ନ ହୁଏ, ତେବେ ଅଚିରେ ଆଦର୍ଶ ଗଣତାନ୍ତ୍ରିକ ସମାଜବାଦର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଏତିକି ବେଳୁ ଦେଶବାସୀ ସାବଧାନ ହୋଇ ଏହାର ରକ୍ଷଣ, ପାଳନ ଏବଂ ଉନ୍ନତି ବିଧାନ ପାଇଁ ଯତ୍ନବାନ୍ ନ ହେଲେ ଉକ୍ତ ଆଦର୍ଶ ରାଜନୀତିର ଅଧୋଗତି ହେବ ଏବଂ ପତନ ହେବ ।

ଧନଲିପ୍ସା, ଭୋଗଲିପ୍ସା ଏ ଦେଶର ପ୍ରକୃତି ନୁହେଁ । କାରଣ ଧନରେ ମନୁଷ୍ୟ ଶହେ ବର୍ଷ ବଞ୍ଚେ ନାହିଁ । ଜନ୍ମ, ମୃତ୍ୟୁ: ଜରା, ବ୍ୟାଧି ରୂପ ସାର୍ବଜନୀନ ଦୁଃଖରୁ ମନୁଷ୍ୟ ରକ୍ଷା ପାଇପାରେ ନାହିଁ । ସବୁବେଳେ ଦାଣ୍ଡୀ ଲଡ଼ୁ ଖାଏ ନାହିଁ । ସେ ଜାଣେ (ଭୋଗେ, ରୋଗ ଭୟଂ) ଭୋଗରେ କେବଳ ରୋଗ ଭୟ ଥାଏ । ତେଣୁ ସେ

କଠିନ ଜୀବନ-ଯାତ୍ରାକୁ ପସନ୍ଦ କରେ । ରାଜନୀତିରେ ଆଧ୍ୟାତ୍ମିକତା ବିସ୍ତାର ବୃଦ୍ଧି ହେଲେ ସାମ, ଦାନ ବିକାଶ ଲାଭ କରିବ ଏବଂ ଦଣ୍ଡଭେଦ ସଂକୋଚ ହୋଇଯିବ । ସେହିପରି ସମାଜରେ ଧର୍ମ ଉପୁଜନିତ ନୈତିକତା ପ୍ରତିଷ୍ଠା ଲାଭ କରିବ । ତେଣୁ ରାଜଦଣ୍ଡ, ସମାଜଦଣ୍ଡ ଏବଂ ଲୋକନିନ୍ଦା ଜନିତ କର୍ମ ଆଡ଼କୁ ଦୃଷ୍ଟି ଯିବ ନାହିଁ । ଆଜକାଲି ସମାଜରେ ଦୁର୍ନୀତି ବ୍ୟାପକ ଭାବେ ଦେଖା ଯାଉଅଛି । ତଥାପି ଦୁର୍ନୀତି ନୈତିକତାକୁ ଭୟ କରେ । ଜଣେ ଦୁର୍ନୀତିଗ୍ରସ୍ତ ଯେତେ ଧନଶାଳୀ ହେଲେ ବା କ୍ଷମତାସମ୍ପନ୍ନ ହେଲେ ମଧ୍ୟ ତାକୁ ଲୋକେ ନିନ୍ଦା କରନ୍ତି, ଜଣେ ନୀତିବାନ୍ ଦରିଦ୍ର ଲୋକକୁ ସମ୍ମାନ ଦେଖାଇ ଥାଆନ୍ତି ।

ସାଧାରଣତଃ ଦଣ୍ଡ ଭୟରୁ ଅବୈଧ ଭାବରେ ନୈତିକତା ପାଳନ କରୁଥିବାରୁ ନୈତିକତାରେ ନିଷ୍ଠା ନ ଥାଏ । ମାତ୍ର ଆଧ୍ୟାତ୍ମିକ ସାଧନ ବିସ୍ତାରରେ ନୈତିକତା ପ୍ରତିଷ୍ଠା ଲାଭ କରେ ।

ଆଧ୍ୟାତ୍ମିକତାର ସାଧନ, ବିସ୍ତାର ଓ ସାଧନ ବିସ୍ତାର ଜନିତ ଚିନ୍ତାଧାରା ଯେତେ ସମାଜରେ ବ୍ୟାପକ ହେବ, ସେତେ ଗଣତାନ୍ତ୍ରିକ ସମାଜବାଦର ମୂଳଭିତ୍ତି ସୁଦୃଢ଼ ହେବ । ତ୍ୟାଗ ମନୋଭାବ, ତତ୍ପର ନିଷ୍ଠା ଓ ସନ୍ତୋଷ, ଏହି ତିନୋଟି ଗଣତାନ୍ତ୍ରିକ ସମାଜବାଦର ମୂଳ-ଭିତ୍ତି । ଏହା ଆଧ୍ୟାତ୍ମିକତାର ପ୍ରଚାର ଓ ପ୍ରସାର ଫଳରେ ବ୍ୟାପକତା ଲାଭ କରେ । ଏହା ବ୍ୟକ୍ତିଗତ ତଥା ସାମାଜିକ ଜୀବନରେ ଶାରୀରିକ, ମାନସିକ, ଆର୍ଥିକ ଓ ପାରିବାରିକ ସର୍ବାଙ୍ଗୀନ ମଙ୍ଗଳଦାୟକ ।

ଜଣେ ନୀତିବାନ୍ ଦୃଷ୍ଟିରେ ଜଣେ ଦୁର୍ନୀତିଗ୍ରସ୍ତ ଦୟାର ଯୋଗ୍ୟ । ଆର୍ଥିକ ସମ୍ପନ୍ନ ଲୋକ ଜରା, ବ୍ୟାଧି ଓ ମୃତ୍ୟୁରୁ ରକ୍ଷା

ପାଇ ପାରେ ନାହିଁ, ଶରୀର ବର୍ଦ୍ଧ ଜୀବିତ ରହି ପାରେ ନାହିଁ । ଅନବ୍ୟୁପିତ ଆହାର ବିହାରରେ ଜାଣି ଶୁଣି ରୋଗ ଅର୍ଜନ କରେ ! ଅକାଳ ବାର୍ଦ୍ଧକ୍ୟ ଆସେ ଏବଂ ଅକାଳରେ ମୃତ୍ୟୁ ହୁଏ । ଲୋଭ ପରବଶ ହୋଇ ସମାଜ ବିରୋଧୀ କାର୍ଯ୍ୟ କରେ, ତେଣୁ ସମାଜରେ ନିନ୍ଦିତ ହୁଏ । ସବୁ ଦିଗରୁ ସେ ସୁଖ ଶାନ୍ତିରୁ ବଞ୍ଚିତ ହୁଏ । ତଥାପି ଲୋକ କାହିଁକି ଦୁର୍ନୀତି ଆଚରଣ କରେ ? ଏହି କଥା ଭାବି ସେ ମନେ ମନେ ହସେ ଏବଂ ଆଶ୍ଚର୍ଯ୍ୟ ହୁଏ । ତଥାପି ସମାଜରେ ଦୁର୍ନୀତି ରହିବ । ମାତ୍ର ସମାଜର ମୁଣ୍ଡ ଅର୍ଥାତ୍ ବୁଦ୍ଧିଜୀବୀମାନେ ଦୁର୍ନୀତିଗ୍ରସ୍ତ ହେଲେ ସମାଜର ଅଧିକାଂଶ ସ୍ତରରେ ତାହା ବ୍ୟାପି-ଯିବ । ପରିଣାମରେ ଭୋଗଲିପ୍ସା ଏବଂ ଆଧିପତ୍ୟ ମନୋଭାବ ବୃଦ୍ଧି ପାଇ ସମାଜ ବିକଳାଙ୍ଗ ହେବ । ପରିଣାମରେ ନୈତିକତା ସଂକୁଚିତ ହୋଇଯିବ ଏବଂ ସମାଜର ଅଧୋଗତି ହେବ । ମାତ୍ର ଏହି ତ୍ୟାଗ ମନୋଭାବାପନ୍ନ, ଆଧ୍ୟାତ୍ମିକତା ପରିପୂର୍ଣ୍ଣ ବିଶ୍ୱର, ହୃତ ଏହି ପୁଣ୍ୟଭୂମି ଭାରତବର୍ଷ ଯେତେବେଳେ ବୁଝିବ ଯେ ଆମେ ତଳ ଆଡ଼କୁ ଖସି ଯାଉଚୁ, ପୁଣି ଯେତେବେଳେ ସେ ଜାଗିବ, ପୁଣି ତାର ଚିନ୍ତାଧାରା ଏବଂ ତ୍ୟାଗ ମନୋଭାବ ବୃଦ୍ଧି ପାଇବ ଏବଂ ବ୍ୟାପକ ହେବ । ଦୁର୍ନୀତି ସଂକୁଚିତ ହୋଇଯିବ ଏବଂ ଆଦର୍ଶ ସାମାଜିକ ଜୀବନ ପ୍ରତିଷ୍ଠିତ ହେବ । ଏହିପରି ଭାବରେ ଇତିହାସର ଅତୀତ ଯୁଗରୁ ଉତ୍‌ଥାନ ପତନ ଭିତରେ ଏହି ଜାତି ଜୀବିତ ରହି-ଅଛି ଏବଂ ରହିଥିବ ।

ପରମ୍ପରା ଆଲୋଚନା କଲେ ଏହାର ଧର୍ମ ଓ ସମାଜ ସନାତନ । କାରଣ ତ୍ୟାଗ ଏହାର ପରମ୍ପରା, ତ୍ୟାଗ ମନୋଭାବ ନିଜସ୍ୱ, ଜାତୀୟତା ପ୍ରକୃତିଗତ ଧର୍ମ ।

ଆମର ଆଜ ଗୋଟିଏ କଥା ଜାଣି ରଖିବା ଉଚିତ । ଏହା ଆଦର୍ଶ ହେଉ ବା ବସ୍ତବ ହେଉ ଆମ ଦେଶରେ ବର୍ଣ୍ଣାଶ୍ରମ ଧର୍ମ ନାମରେ ସାମାଜିକ ଧର୍ମ ବହୁକାଳରୁ ପ୍ରଚଳିତ ହୋଇ ଆସୁଅଛି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ବର୍ଣ୍ଣ ଏବଂ ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସୀ ଏହି ଚାରି ଆଶ୍ରମ ବା ଅବସ୍ଥା— ଏହାକୁ ବର୍ଣ୍ଣାଶ୍ରମ ଧର୍ମ କହନ୍ତି । ବର୍ତ୍ତମାନ ଏହି ଧର୍ମ ସମାଜରେ ପ୍ରଚଳିତ ଅଛି । ଏହି ଧର୍ମକୁ ତ୍ୟାଗ ଉପରେ ପ୍ରତିଷ୍ଠା କରା ଯାଇ ଅଛି । ତ୍ୟାଗର ମହାନ୍ ଆଦର୍ଶ ବ୍ରାହ୍ମଣ ବା ବୁଦ୍ଧିଜୀବୀ—ଯେଉଁମାନେ ତ୍ୟାଗ ଭାବରେ ଜୀବନଯାତ୍ରା ନିର୍ବାହ ପୂର୍ବକ ଆଧ୍ୟାତ୍ମିକତାର ସାଧନ, ଶୁଦ୍ଧ ବସ୍ତୁର ଜନିତ ଚିନ୍ତାଧାରା ପ୍ରଚାର କରି ସମାଜର ଗଠନ, ପାଳନ ଓ ବିକାଶ ପାଇଁ କର୍ମ କରି କାଳାତିପାତ କରନ୍ତି । କ୍ଷତ୍ରିୟ ବା ଯୁଦ୍ଧଜୀବୀ—ଯେଉଁମାନେ ସମାଜର ରକ୍ଷା ପାଇଁ, ଦେଶ ରକ୍ଷା ପାଇଁ ବହିଃଶତ୍ରୁ ଆକ୍ରମଣରୁ ରକ୍ଷା ପାଇଁ ଅସ୍ତ୍ର ଧାରଣ କରନ୍ତି । କୃଷି, ଗୋରକ୍ଷା, ବ୍ୟବସାୟ ଯେଉଁମାନେ କରନ୍ତି, ସେମାନେ ବୈଶ୍ୟ । ଉପରୋକ୍ତ ତିନି ବର୍ଣ୍ଣର ଯେଉଁମାନେ ସେବା କରନ୍ତି, ସେମାନେ ଶୂଦ୍ର । ଏହି ଚାରି ବର୍ଣ୍ଣ ବା ଚାରି ଜାତିକୁ ତ୍ୟାଗ ଉପରେ ପ୍ରତିଷ୍ଠା କରାଯାଇଅଛି । କେବଳ କର୍ମ ବିନିମୟରେ ଜୀବନ ଯାତ୍ରା ନିର୍ବାହ କରି ସମାଜରେ ପରସ୍ପରକୁ ସାହାଯ୍ୟ କରିବା ଏହି ବର୍ଣ୍ଣାଶ୍ରମ ଧର୍ମର ଉଦ୍ଦେଶ୍ୟ । ଯେ ଯାହା ସ୍ଥାନରେ ଗରୀୟାନ୍, ଶ୍ରେଷ୍ଠ ବଡ଼ର ପ୍ରଶ୍ନ ନାହିଁ । କାରଣ ସମାଜର ମୁଣ୍ଡ ବ୍ରାହ୍ମଣ ବା ବୁଦ୍ଧିଜୀବୀ, ବାହୁ କ୍ଷତ୍ରିୟ ବା ଯୁଦ୍ଧଜୀବୀ, ଜଙ୍ଘ ବୈଶ୍ୟ ବା କୃଷକ, ଗୋପାଳକ, ବ୍ୟବସାୟୀ; ଶୂଦ୍ର ତିନି ବର୍ଣ୍ଣର ସେବକ, ତେଣୁ ପାଦ । ଭଗବାନ୍ କହୁଛନ୍ତି ଏହା ମୋହର ଶରୀରର ଚାରୋଟି ଅଙ୍ଗ । ଗୋଟିକର ଅଭାବ ହେଲେ ମୁଁ ଅଚଳ, ସମାଜ ମଧ୍ୟ ଅଚଳ ।

ମୁଁ ତୁମର ଆଦର୍ଶ, ମୁଁ ଯେପରି ଅନାସକ୍ତ ଭାବରେ ସମାଜର ମଙ୍ଗଳ ପାଇଁ କର୍ମ କରେ, ତୁମେ ଗୃହି ବର୍ଣ୍ଣ ସେହିପରି ଅନାସକ୍ତ ଭାବରେ ସମାଜର ମଙ୍ଗଳ ପାଇଁ କର୍ମ କରି ତାର ବିନିମୟରେ ଯାହା ପ୍ରାପ୍ତି ହେବ, ତାହା ଆନନ୍ଦରେ ଖର୍ଚ୍ଚ କରି ସୁଖରେ ଜୀବନ ଯାପନ କର ।

ସେହିପରି ଗୃହି ଆଶ୍ରମ ତ୍ୟାଗ ଉପରେ ପ୍ରତିଷ୍ଠା କରାଯାଇ ଅଛି । ତେଣୁ ଏ ଦେଶ ତ୍ୟାଗର ଦେଶ—ଏଠାରେ ଭୋଗର ସ୍ଥାନ ନାହିଁ, ପ୍ରଶ୍ନ ନାହିଁ, ବିଚାର ନାହିଁ, ଭୋଗ ପାଇଁ କର୍ମ ନାହିଁ ।

ତ୍ୟାଗ ଯେପରି ଆଦର୍ଶ ଜନିତ ମନୋଭାବରେ ମଙ୍ଗଳ-ଦାୟକ, ସେହିପରି ବାସ୍ତବ ଜନିତ କର୍ମ ତତ୍ପରତାରେ ସର୍ବାଙ୍ଗୀନ ସୁଖ-ଶାନ୍ତି-ଦାୟକ । ସମାଜରେ ତ୍ୟାଗ ମନୋଭାବ, ତ୍ୟାଗ କର୍ମ ତତ୍ପରତା ଯେତେ ବ୍ୟାପକ ହେବ, ସେତେ ସମାଜ ସର୍ବାଙ୍ଗ ସୁନ୍ଦର ହେବ ଏବଂ ରାଜ୍ୟ ବା ରାଷ୍ଟ୍ର ରାମ-ରାଜ୍ୟରେ ପରିଣତ ହେବ ।

ମାତ୍ର ଆଧ୍ୟାତ୍ମିକତା ରୂପକ ସାଧନ, ବିଶ୍ବର ଓ ଶାନ୍ତାଧାରର ସାମୟିକ ଆଶ୍ରୟ ନ ନେଲେ ତ୍ୟାଗ ଓ ଚରିତ୍ରନିଷ୍ଠା ଜନିତ ଆନନ୍ଦ ଉପଲବ୍ଧି ହୋଇପାରେ ନାହିଁ । ତେଣୁ ଲୋକ ଦେଖାଣିଆ ହୁଏ । ମନ ମଧ୍ୟ ଇତସ୍ତତଃ ହୁଏ, ନିଷ୍ଠା ରହି ପାରେ ନାହିଁ, ତଳକୁ ଖସି ଆସିବାର ଆଶଙ୍କା ଥାଏ ।

ଆମେ ବର୍ତ୍ତମାନ ସାମ୍ୟବାଦ, ସମାଜବାଦ, ଗଣତାନ୍ତ୍ରିକ ସମାଜବାଦ ଇତ୍ୟାଦି ବିଭିନ୍ନ ପ୍ରକାର ରାଜନୈତିକ ମତବାଦ ଶୁଣିବାକୁ ପାଉଁ । ସବୁଥିରେ ରାଜନୀତି, ଅର୍ଥନୀତି, ସମାଜ-ନୀତି, ଶିକ୍ଷା, ସଭ୍ୟତା, ସଂସ୍କୃତି ଇତ୍ୟାଦି ବ୍ୟାପକ ଦୃଷ୍ଟିଭଙ୍ଗୀ

ଅଛି ଏବଂ କର୍ମ ପ୍ରେରଣା ଅଛି । ଶିକ୍ଷା, ଚିକିତ୍ସା, ଅନ୍ନ, ବସ୍ତ୍ର ଓ ବାସୋପଯୋଗୀ ଗୃହ ଇତ୍ୟାଦି ଜୀବନ ଧାରଣମାନ ସର୍ବାଦୌ ପ୍ରୟୋଜନ । ଏହା ସବୁ ମତବାଦୀଙ୍କର ସିଦ୍ଧାନ୍ତ ନେଡ଼ । ମାତ୍ର ଆଧ୍ୟାତ୍ମିକତାର ଆଦର୍ଶ, ସାଧନ, ବଳରେ ଜନିତ ମାର୍ଜିତ ଚିନ୍ତାଧାରା ନ ରହିଲେ, ଭୋଗଲିପ୍ସା, କ୍ଷମତାଲିପ୍ସା ଜନିତ ଉତ୍କଟ ବୈଷମ୍ୟ, ପରସ୍ପର ଈର୍ଷା, ଦ୍ୱେଷ, ଦୁର୍ମତି, ସମାଜକୁ ଛିନ୍ନଭିନ୍ନ କରିଦେବ ।

"ଯାବତ୍ ଜୀବେତ୍ ସୁଖଂ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ୍ ।
ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ॥"

ଏହାକୁ ଚାର୍ବାକ୍ ମତବାଦ କହନ୍ତି ।

ଏହାର ଦର୍ଶନ ମଧ୍ୟ ଥିଲା । ଚାର୍ବାକ୍ ଅର୍ଥ ଚାରୁ ବାକ୍, ସୁନ୍ଦର ସୁନ୍ଦର କଥା । ଋଣ କରି ଅମିତ କରି ଯେ ଯେପରି ପାରିଲା ସେପରି କରି ଖାଇ ପିଇ ଭୋଗ କରି ମୌଜ ମଜଲିସରେ ଜୀବନ-ଯାପନ କର । ମାତ୍ର ନୈତିକତା ଦୃଷ୍ଟିରେ ଏଇ ସୁସ୍ଥ ମନୋଭାବ ଓ ସୁବିଧାବାଦ ରୂପ ଦର୍ଶନ ଶାସ୍ତ୍ର ସମ୍ପୂର୍ଣ୍ଣ ଭାବରେ ସଂକୁଚିତ ହୋଇଗଲା । ସାଧୁ ସମାଜ ଏହା ପସନ୍ଦ କଲା ନାହିଁ ।

ଏହି ଚିନ୍ତାଧାରା ସମାଜରେ ପ୍ରବଳ ହେବ । କେବଳ ଜୀବନ ଧାରଣର ମାନ ବଢ଼ିଲେ ମନୁଷ୍ୟ, ମନୁଷ୍ୟ ପଦବାଚ୍ୟ ହୋଇ ପାରେ ନାହିଁ । ତା ସଙ୍ଗେ ସଙ୍ଗେ ଶିକ୍ଷା, ସଭ୍ୟତା, ସଂସ୍କୃତି, ସାହିତ୍ୟ, ଶିଳ୍ପ, କଳା, ବିଜ୍ଞାନ ଇତ୍ୟାଦି ମାନବୀୟ ଜ୍ଞାନ ପ୍ରୟୋଜନ । ମାତ୍ର ଭାରତର ଯାହା ଜାତୀୟତା, ନିଜତ୍ୱ, ବିଶେଷତ୍ୱ, ବସୁଧୈବ କୁଟୁ-ମ୍ବକଂ, "ମନୁଷ୍ୟଃ ଭ୍ରାତରଃ ସର୍ବେ ସ୍ୱଦେଶଂ ଭୁବନତ୍ରୟଂ" ଏହି ଭାବର ପ୍ରତିପାଦକ, ଯାହା ତ୍ୟାଗ ମନୋଭାବାପନ୍ନ, ସଂଯତ ଓ

ନିଃସ୍ୱାର୍ଥ ଭାବରେ ସମୂହ ସ୍ୱାର୍ଥ ଦୃଷ୍ଟିରେ ଜୀବନଯାପନର ପ୍ରେରଣା ଦାୟକ, ଯାହା ଶିକ୍ଷା, ସଂସ୍କୃତି, କଳା ଓ ବିଜ୍ଞାନ ଇତ୍ୟାଦିର ଆଦର୍ଶ ସ୍ୱରୂପ, ତାହାକୁ ଅକ୍ଷୁର୍ଣ୍ଣ ରଖିବାକୁ ହିଁ ହେବ । ଆଧ୍ୟାତ୍ମି-କତାର ସାଧନ, ଚରିତ୍ର ଓ ଚିନ୍ତାଧାରାର ବ୍ୟାପକ ବିକାଶ ନ ହେଲେ ଜୀବନ ଧାରଣର ମାନ ସ୍ୱାର୍ଥ, ଭୋଗଲାଳସା ଜନିତ ଈର୍ଷା, ଦ୍ୱେଷ, ଭେଦ-ଭାବର ପ୍ରୟୋଗରେ ଅନ୍ୟର ଅନିଷ୍ଟ ଚିନ୍ତା, କେବଳ ଅର୍ଥ ପାଇଁ ଜୀବନ ସଂଗ୍ରାମ, ଆଦର୍ଶହୀନ ଶିକ୍ଷା, ସଂସ୍କୃତି ଇତ୍ୟାଦି ସମାଜର ଅକଲ୍ୟାଣ ଦୁର୍ଭାବନା ଓ ଦୁଷ୍କର୍ମର ବ୍ୟାପକ ହେବ । ଗଣ-ତାନ୍ତ୍ରିକ ସମାଜବାଦ ବା ସମାଜବାଦ ବା ସାମ୍ୟବାଦ ଯାହାହେଉ, ଆଧ୍ୟାତ୍ମିକତାର ଆଦର୍ଶ, ଚରିତ୍ର ଓ ଚିନ୍ତାଧାରା ବ୍ୟାପକ ନ ହେଲେ ଭାରତୀୟ ଜାତିର ଅନୁକୂଳ ହେବ ନାହିଁ । କାରଣ ଏଥିରେ ଜାତୀୟତା, ନିଜତ୍ୱ ଓ ବିଶେଷତ୍ୱ ନାହିଁ ।

ଗଣତାନ୍ତ୍ରିକ ଢ଼ାଞ୍ଚାରେ ସମାଜବାଦ ବା ସାମାଜିକ ନ୍ୟାୟ ପ୍ରତିଷ୍ଠା ସମସ୍ତଙ୍କର ଇଚ୍ଛା । କାରଣ ଏଥିରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଅଛି । ଯେ, ଯେପରି ଗୁଣ କର୍ମ ଜନିତ କର୍ମ ବିନିମୟରେ ଜୀବନ ଯାତ୍ରା ନିର୍ବାହ କରିପାରେ । ଯେ ଯାହାର ମତ, ସ୍ୱାଧୀନ ଭାବରେ ବ୍ୟକ୍ତ କରି ପାରେ । ଦଳଗତ ମତବାଦ, ଧର୍ମ ମତବାଦ, ସାମ୍ପ୍ରଦାୟିକ ମତ-ବାଦର ସ୍ୱାଧୀନତା ଅଛି । ଆଧ୍ୟାତ୍ମିକତାର ଆଦର୍ଶ ଅଛି । ଆଧ୍ୟା-ତ୍ମିକତାର ସାଧନ, ଚରିତ୍ର ଓ ଚିନ୍ତାଧାରାର ପ୍ରକୃତରେ ଆନ୍ତରିକତା ଅଛି । ସବୁ ମତ ଓ ମତବାଦର ପ୍ରକୃତରେ ସହିଷ୍ଣୁତା ଅଛି । ମାତ୍ର ଜନତା ଜନାର୍ଦ୍ଦନ ରୂପ ଜନସାଧାରଣଙ୍କର ଆଧ୍ୟାତ୍ମିକତା ଚେତନା ନାହିଁ, ରାଜନୈତିକ ଚେତନା ନାହିଁ । ଜୀବନ ଧାରଣର ମାନ ବଢ଼ାଇବା ପାଇଁ ଅର୍ଥନୈତିକ ଚେତନା ପ୍ରଯୁକ୍ତ କର୍ମ ତତ୍ପରତା ନାହିଁ ।

ଆମେ ଯେଉଁ କର୍ମ କରୁ, ଯାହା ଚିନ୍ତା କରୁ, ଈଶ୍ବରଙ୍କ ପୂଜା ଜ୍ଞାନରେ କଲେ ଅନ୍ତଃକରଣ ପବିତ୍ର ହେବା ସଙ୍ଗେ ସଙ୍ଗେ ବହୁ ବାଧା ବିଘ୍ନ ଅତିକ୍ରମ କରି ବହୁ ସମସ୍ୟାର ସମାଧାନ ହୋଇଯିବ । ଯେ ପର୍ଯ୍ୟନ୍ତ ଆମ୍ଭେମାନେ ଖାଇବା, ପିଇବା, ଶୋଇବା, ଜାଗିବା, ଅର୍ଥ ଉପାର୍ଜନ ପାଇଁ ପରିଶ୍ରମ କରିବା, କୁଟୁମ୍ବ ପୋଷଣ କରିବା, ସୁଖ ଶାନ୍ତି ଏବଂ ଆନନ୍ଦ ଉପଭୋଗ କରିବା, ଜ୍ଞାନ ଉପାର୍ଜନ କରିବା, ସାମାଜିକ, ଆର୍ଥିକ, ବୈଜ୍ଞାନିକ, ରାଜନୈତିକ ଚିନ୍ତା ଏବଂ କର୍ମରେ ନିଯୁକ୍ତ ରହିବା ଆଦି ସଂକ୍ଷେପରେ ଆମ୍ଭମାନଙ୍କର ଚିନ୍ତାଧାରା । ସମସ୍ତ ଅନୁଭୂତି ଦୃଷ୍ଟିଭଙ୍ଗୀ ଏବଂ କାର୍ଯ୍ୟକ୍ରମ ଈଶ୍ବରଙ୍କର ପୂଜା ଜ୍ଞାନରେ କଲେ ସ୍ୱାର୍ଥପରତା ସଂକୁଚିତ ହୋଇଯାଏ ଏବଂ ଐଶ୍ବରୀୟ ଭାବର ଜାଗ୍ରତ ହୁଏ । ସାର୍ବଜନୀନ ହିତ ରହିତ, ଏକ ଅଥଚ ଯାହା ସମସ୍ତଙ୍କ ଭିତରେ ବ୍ୟାପକ ଭାବରେ ବିଦ୍ୟମାନ—ଏହି ଭାବର ଉଦ୍ରେକ ହୁଏ ।

ତେଣୁ ସଂଘବଦ୍ଧ ଭାବରେ ନିଜର ତଥା ସମାଜର ମାନସିକ ଓ ଆଧ୍ୟାତ୍ମିକତାର ବିକାଶ କରିବା ସଙ୍ଗେ ସଙ୍ଗେ ଆର୍ଥିକ ଉନ୍ନତି ସାଧନ କରିବା ପାଇଁ ଆମ୍ଭମାନଙ୍କୁ କର୍ମପନ୍ଥା ନିର୍ଦ୍ଦେଶ କରିବାକୁ ହେବ । ଆଧ୍ୟାତ୍ମିକତାର ବ୍ୟାପକ ପ୍ରଚାର ଏବଂ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ନୀତି ନିୟମ ନିର୍ଦ୍ଧାରଣ କରିବାକୁ ହେବ । ସେଥିପାଇଁ ଆଧ୍ୟାତ୍ମିକ ସମାଜବାଦୀ ସଂଘ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ି କର୍ମଯୋଗୀ ଓ ସଦ୍‌ସଙ୍ଗ ଗଠନ ପୂର୍ବକ ସମାଜର ସେବା କରିବା ସଂଘର ଉଦ୍ଦେଶ୍ୟ ଏବଂ କର୍ମପନ୍ଥା ହେବ । ଓଁ ତତ୍‌ସତ୍ ।

"ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍ ॥"

ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ

